# ସଂସ୍କାରକ ସାହିତ୍ୟଗୁରୁ
# ବାଗ୍ମୀ ବିଶ୍ୱନାଥ କର



ସଂଯୋଜନା

ଡାକ୍ତର କମଳାକାନ୍ତ କର

ସୁବର୍ଣ୍ଣଶ୍ରୀ ପ୍ରକାଶନୀ

# ସଂସ୍କାରକ ସାହିତ୍ୟଗୁରୁ
# ବାଗ୍ମୀ ବିଶ୍ୱନାଥ କର

*ସଂଯୋଜନା :*
**ଡାକ୍ତର କମଳାକାନ୍ତ କର**

*ପ୍ରକାଶକ :*
**ସୁବାର୍ତ୍ତା ପ୍ରକାଶନୀ**
ଭି.ଆଇ.ଏମ୍.-୧, ଶୈଳଶ୍ରୀବିହାର
ଭୁବନେଶ୍ୱର - ୭୫୧ ୦୨୧
ଦୂରଭାଷ : ୦୬୭୪-୨୭୪୦୬୦୬
ଭ୍ରାମ୍ୟମାଣ : ୯୯୩୭୯୨୭୬୯୫

*ଅକ୍ଷର ସଜ୍ଜା ଓ ମୁଦ୍ରଣ :*
ଅରୋପ୍ରଭା ପ୍ରିଣ୍ଟର୍ସ, ଭୁବନେଶ୍ୱର-୧୫

*ପ୍ରଥମ ସଂସ୍କରଣ :* ୨୪ ଡିସେମ୍ବର ୨୦୦୯
(ବାଗ୍ମୀ ବିଶ୍ୱନାଥଙ୍କ ଜନ୍ମଦିବସ ଉପଲକ୍ଷେ)

ମୂଲ୍ୟ : ଟ ୫୦.୦୦ (ପଚାଶ ଟଙ୍କା)

**SANSKARAKA SAHITYAGURU**
**BAGMI BISWANATH KAR**

*Sanjojana :*
**Dr. Kamalakanta Kar**

*Published by :*
**Subarta Prakasani**
VIM-1, Sailashree Vihar,
Bhubaneswar - 751021
Ph. : 0674-2740606
Mob. : 99379 27695

*D.T.P. & Printed at :*
Auroprava Printers,
Bhubaneswar-15

*First Edition :*
24th December-2009

Price : Rs. 50.00 (Fifty Rupees)

# ସୂଚିପତ୍ର



***

# ଅଗ୍ରଲେଖ



ରଜତ କୁମାର କର

*"ଅନନ୍ୟ ନିକେତନ"*
ଏନ୍-୧/୧୮୩, ଆଇ.ଆର୍.ସି. ଭିଲେଜ୍
ଭୁବନେଶ୍ୱର-୭୫୧୦୧୫

# ଶ୍ରୁତି ଓ ସ୍ମୃତିରେ ସାହିତ୍ୟ ପୁରୋଧା
# ବାଗ୍ମୀ ବିଶ୍ୱନାଥ କର

ଓଡ଼ିଆ ଗଦ୍ୟ ସାହିତ୍ୟର ବିଶିଷ୍ଟ ଦିଗ୍‌ଦର୍ଶକ, ପ୍ରବନ୍ଧ ପରିବେଷଣରେ ମନନଶୀଳ ବିଶ୍ଳେଷଣର ପ୍ରବର୍ତ୍ତକ ତଥା ମାର୍ଗଦର୍ଶକ ଓ ପତ୍ରିକା ସମ୍ପାଦନାରେ ପ୍ରବୀଣ ଓ ନବୀନ ଲେଖକଙ୍କ ରଚନାର ଆଙ୍ଗିକ ବିସ୍ତାରର ନିର୍ଭୀକ ଓ ନିରପେକ୍ଷ ସଂଯୋଜକ ବିଶ୍ୱନାଥ କରଙ୍କୁ ଏବେ ବାଗ୍ମୀ ବିଶ୍ୱନାଥ କର ଆଖ୍ୟା ଦେବା ଦେଖି ହୁଏତ ମନେ ହୋଇପାରେ ଯେ, ସେ ଜଣେ ଚମକ ସୃଷ୍ଟିକାରୀ ବକ୍ତା କେବଳ ଥିଲେ । ବହୁ ପ୍ରାର୍ଥନା ସଭା, ଆଲୋଚନା ସମାରୋହମାନଙ୍କରେ ତାଙ୍କୁ 'ସାହିତ୍ୟ ପୁରୋଧା ବିଶ୍ୱନାଥ କର' କୁହାଯାଉଥିବା ମୁଁ ବାଲ୍ୟୁତ କାଳୁ ଶୁଣିଛି ।

ଜଣେ ପ୍ରଭାବଶାଳୀ ଧୁରୀଣ ବକ୍ତା ଓ ଜନ ହୃଦୟ ଅଧିକାର ପାଇଁ ଭାଷାର ବିସ୍ଫୋରଣ ଘଟାଇ, ପ୍ରଚଣ୍ଡ ବାଗ୍ମୀ ଭାବେ ସେ ପ୍ରତିଷ୍ଠିତ ହୋଇଥିଲେ ନିଶ୍ଚୟ; କିନ୍ତୁ ଏହା ବ୍ୟତୀତ ପତ୍ରିକାର ସମ୍ପାଦନା ଜରିଆରେ ବହୁ ନବୀନ ଲେଖକଙ୍କ ରଚନାକୁ ସୁସଜ୍ଜିତ କରି ସେସବୁକୁ ପ୍ରକାଶୋପଯୋଗୀ କରାଇ, ସେ ଥିଲେ ସାହିତ୍ୟ ପୁରୋଧାସ୍ଥାନୀୟ । ଲେଖନୀର ସ୍ପର୍ଶ ତଥା ବାଚନିକ ଉପଦେଶ ପୁଷ୍ଟ ରଚନାର, ସେ ସମୟର ଲେଖକମାନେ ପ୍ରତିଷ୍ଠିତ ହୋଇ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଅଛନ୍ତି ।

ତାଙ୍କ ବକ୍ତୃତାର ଶୈଳୀ ଏ କାଳର ସାହିତ୍ୟପ୍ରେମୀଙ୍କ ଶ୍ରୁତିଗୋଚର ହୋଇପାରିବ ନାହିଁ । ତାଙ୍କର ମହାପ୍ରୟାଣ ହୋଇଥିଲା ୧୯୩୪ରେ । ତାଙ୍କ ପ୍ରତିଷ୍ଠିତ ଉତ୍କଳ ସାହିତ୍ୟ ପ୍ରେସ୍‌ର ପରିଚାଳକ ତଥା ବିଶ୍ୱନାଥ କରଙ୍କ ପଟ୍ଟଶିଷ୍ୟ, ମୋର ପିତା କୁଳମଣି

କରଙ୍କ ଠାରୁ ଶୁଣିଛି ଯେ, ସେ ଜ୍ୱାଳାମୟୀ ଭାଷଣ ଦେଇ ସଭାକୁ ବିଶେଷ ଭାବେ ପ୍ରଭାବିତ କରିପାରୁଥିଲେ । ସେଥିପାଇଁ ଫକୀରମୋହନ ଲେଖିଥିଲେ :

"ଢେର ଦିନ ଭାବିଭାବି ବୁଝିଛି ମନରେ
ଲୋକପରି ଲୋକଟାଏ ବିଶ୍ୱନାଥ କରେ ।
ସଭାସମିତିରେ ଯେବେ ଦେବ ତାଙ୍କୁ ଛାଡ଼ି
ବକ୍ତୃତାଟା ବଢ଼ିପାଣି ପରି ଯିବ ମାଡ଼ି ।
ବାଟୁଳି ବାଜିବ ନାହିଁ କଥା ଗଲେ କହି
ଉଗୁଡ଼ା ମାଠିଆ ମୁହଁ ପାଣି ପରି ବହି ।"

ବର୍ତ୍ତମାନ ଯେତିକି ଗଦ୍ୟ ରଚନା ଦୃଷ୍ଟିକୁ ଆସିପାରିଛି, ସେଥିରୁ ତାଙ୍କର ପ୍ରଭାବଶାଳୀ ଗଦ୍ୟଶୈଳୀ ବାରି ହୋଇପଡ଼େ । ଓଡ଼ିଶାର ପ୍ରବନ୍ଧ ସାହିତ୍ୟର ଇତିହାସରେ ଓ ସମ୍ପାଦନା କ୍ଷେତ୍ରରେ ସେ ଏକ ଦିଗବାରିଣୀ ସ୍ତମ୍ଭ ହୋଇ ରହିବେ ।

୧୯୫୩ରେ ସେ ସମୟର "ନ୍ୟୁ ଷ୍ଟୁଡେଣ୍ଟସ୍ ଷ୍ଟୋର୍ସ ଲିଃ" ଦ୍ୱାରା ପ୍ରକାଶିତ ତଥା ତାଙ୍କର ଲେଖକ ଶିଷ୍ୟ ଆଡଭୋକେଟ ଚିନ୍ତାମଣି ଆଚାର୍ଯ୍ୟ (ପରବର୍ତ୍ତୀ କାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି)ଙ୍କ ସମ୍ପାଦିତ ପୁସ୍ତକ ବିଶ୍ୱନାଥ କର (ଆତ୍ମଚରିତ ସମ୍ବଳିତ ପତ୍ର) ମୋ ଦୃଷ୍ଟିକୁ ଆସିଥିଲା । ବୋଧହୁଏ ୧୯୬୮ରେ, ବାରିପଦା ସ୍କୁଲ ଇନ୍‌ସପେକ୍ଟର ଭାବେ ଏହା ମୋ ନଜରକୁ ଆସିବା ପରେ ମୁଁ ଏହାକୁ ସାଇତି ରଖିଥିଲି ।

ମୋ ଭଳି ସ୍ୱର୍ଗତ ବିଶ୍ୱନାଥ କରଙ୍କ ଅନ୍ୟତମ ସ୍ୱ-ବଂଶୀୟ ପୌତ୍ର ଡାକ୍ତର କମଳାକାନ୍ତ କରଙ୍କ ଆଗ୍ରହ ଓ ସୁବାର୍ତ୍ତା ର ସମ୍ପାଦକ ଶ୍ରୀ ପ୍ରଦ୍ୟୁମ୍ନ ଶତପଥୀଙ୍କ ପ୍ରୋତ୍ସାହନ ଯୋଗୁଁ, ଏହି ପୁସ୍ତିକାର ପୁନଃ ମୁଦ୍ରଣ କରାଯାଉଅଛି ।

ସଂକ୍ଷିପ୍ତ ଆତ୍ମଚରିତ ସହ ଚିନ୍ତାମଣି ଆଚାର୍ଯ୍ୟଙ୍କ ନିଜସ୍ୱ ମୁଖବନ୍ଧରେ ବିଶ୍ୱନାଥଙ୍କ ଜୀବନୀ ସ୍ଥାନ ପାଇଛି । ତାଙ୍କ ଜୀବନୀ ଓ କୃତି ବିଷୟରେ ମୁଁ କିଛି ନ କହି ଚାହୁଁଛି ଯେ, କେନ୍ଦ୍ରୀୟ ସାହିତ୍ୟ ଅକାଦେମୀ ପ୍ରକାଶିତ ତଥା ଅଧ୍ୟାପିକା ଡକ୍ଟର ଅର୍ଚ୍ଚନା ନାୟକଙ୍କ ଦ୍ୱାରା ସମ୍ପାଦିତ "ନିର୍ବାଚିତ ରଚନାବଳୀ—ବିଶ୍ୱନାଥ କର" ପୁସ୍ତକରେ ଥିବା "ବିଶ୍ୱନାଥ କର ପରିଚିତି"ରୁ କିଛି ଉଦ୍ଧୃତି ଏଥିସହିତ ପ୍ରକାଶିତ ହେଲେ ପାଠକେ ସାହିତ୍ୟଗୁରୁ ବିଶ୍ୱନାଥ କରଙ୍କ ଜୀବନୀ ଓ ସାହିତ୍ୟକୃତି ସମ୍ବନ୍ଧୀୟ ଧାରଣା

ପାଇପାରିବେ । ଏଥିପାଇଁ ଅଧ୍ୟାପିକା ଅର୍ଚ୍ଚନା ନାୟକ ଓ କେନ୍ଦ୍ର ଅକାଦେମୀ ଧନ୍ୟବାଦର ପାତ୍ର । ସାହିତ୍ୟ ଜଗତରେ ବିପ୍ଳବ ସୃଷ୍ଟିକାରୀ ତାଙ୍କର "ବିବିଧ ପ୍ରବନ୍ଧ" ଆଜି କେଉଁଠି ହଜିଗଲାଣି ଯେ, ଖୋଜିଲେ ମିଳୁନାହିଁ । ତାକୁ ଉଦ୍ଧାର କରିବାର ଦାୟିତ୍ୱ ବିଷୟରେ ଓଡ଼ିଶାର ସାହିତ୍ୟ ଏକାଡେମୀ ନୀରବ । ତାଙ୍କର ଜୟନ୍ତୀ ମଧ୍ୟ ଏ ଅନୁଷ୍ଠାନ ଦ୍ୱାରା ଆଉ ପାଳିତ ହେଉନାହିଁ ।

କେନ୍ଦ୍ର ସାହିତ୍ୟ ଅକାଦେମୀ ପ୍ରକାଶିତ ଏହି ପୁସ୍ତକରେ ଉଲ୍ଲେଖ ଅଛି ଯେ, ଯାସ୍କଗୋତ୍ରୀୟ କରମାନେ ସ୍ୱର୍ଗତ ଗଜପତି ପ୍ରତାପରୁଦ୍ରଙ୍କ ଅନୁରୋଧ କ୍ରମେ ମହାରାଷ୍ଟ୍ରରୁ ବିଶ୍ୱନାଥ କରଙ୍କ ଗ୍ରାମ ମୂଳବସନ୍ତକୁ ଆସିଥିଲେ । ସମ୍ପାଦିକା ପଣ୍ଡିତ କୃଷ୍ଣଚନ୍ଦ୍ର କରଙ୍କ ଆତ୍ମଜୀବନୀରୁ ହୁଏତ ଏହା ଆଣିଛନ୍ତି । ମାତ୍ର, ମୁଁ ବାରିପଦା ସ୍କୁଲ ଇନ୍‌ସପେକ୍ଟର ଥିବାବେଳେ, ଦର୍ପଣୀର କଣ୍ଟିଗଡ଼ିଆ ଗ୍ରାମରୁ ଆସିଥିବା ପ୍ରବୀଣ ସଂସ୍କୃତ ପଣ୍ଡିତ ଯାସ୍କ ଗୋତ୍ରୀୟ ନବକିଶୋର କର ମୋତେ କହିଥିଲେ, ମହାରାଷ୍ଟ୍ରରୁ ଯାସ୍କ ଗୋତ୍ରୀୟ କର ମାନେ ପୁରୀର ବୀର ପ୍ରତାପପୁର ଶାସନ ଗ୍ରାମକୁ ଆସିଥିଲେ । ଏହି ଯାସ୍କ ଗୋତ୍ରୀୟ କର ବ୍ରାହ୍ମଣମାନଙ୍କର ଅଧିକାରଭୁକ୍ତ ଥିଲା ମୁକ୍ତିମଣ୍ଡପର ଗୋଟିଏ ଖମ୍ବ । ସେଠି ଶେଷ ଯାସ୍କ ଗୋତ୍ରୀୟ ଥିଲେ ଅଗଣି କର । ସେ ସନ୍ନ୍ୟାସୀ ହେବା ପରେ ଅନ୍ୟ ଯାସ୍କ ଗୋତ୍ରୀୟମାନେ ନିମାପଡ଼ା ଚାଲିଗଲେ । ଏହି ବଂଶର ଦୁଇଭାଇ କେନ୍ଦ୍ରାପଡ଼ା ଜମିଦାର ରାଧାଶ୍ୟାମ ନରେନ୍ଦ୍ରଙ୍କ ସମୟରେ ମୂଳବସତି ବା ମୂଳବସନ୍ତ ଗ୍ରାମ ପ୍ରତିଷ୍ଠା କଲେ ।

ଜନସଂଖ୍ୟା ବୃଦ୍ଧି ହେତୁ ନବକିଶୋର କରଙ୍କ ପୂର୍ବପୁରୁଷ କଣ୍ଟିଗଡ଼ିଆ ଗଲେ ଓ ଆମ ପୂର୍ବପୁରୁଷ ବିରୂପା ନଦୀ ଆରପାରି କୁଆଁପାଳ ପାଖ ଚାଇଁଆପାଳ ଗ୍ରାମକୁ ଆସି ରହିଲେ । ଇଂରାଜୀ ଶିକ୍ଷା କରିବାକୁ ଆସି ବିଶ୍ୱନାଥ କର ତାଙ୍କ ଆତ୍ମଜୀବନୀରେ ଏହି କୁଆଁପାଳର ଆଧୁନିକ ଚିନ୍ତା ଓ ପାଶ୍ଚାତ୍ୟ ପ୍ରଭାବର ସୁଫଳ ଓ କୁପ୍ରଭାବ ବିଷୟ ଉଲ୍ଲେଖ କରିଛନ୍ତି ।

ମୋର ପିତା କୁଳମଣି କରଙ୍କ ଭଳି ତାଙ୍କର ସ୍ୱବଂଶୀୟ ଭାତୃଷ୍ପୁତ୍ର ପଣ୍ଡିତ କୃଷ୍ଣଚନ୍ଦ୍ର କର ତାଙ୍କ ଆତ୍ମଜୀବନୀରେ ବିଶ୍ୱନାଥ କରଙ୍କ ଅନ୍ତିମ ଶଯ୍ୟାକାଳୀନ ଯେଉଁ ସଂଳାପର ଉଲ୍ଲେଖ କରିଛନ୍ତି, ତାହା ଏଠାରେ ଉଦ୍ଧାର କରିବା ପ୍ରାସଙ୍ଗିକ ମନେ କରୁଛି । ତାଙ୍କ ପ୍ରତିଷ୍ଠିତ "ଉତ୍କଳ ସାହିତ୍ୟ" ପତ୍ରିକା ପ୍ରତି ତାଙ୍କର ମମତା କେତେ ଥିଲା ତାହା ଏଥିରେ ପ୍ରତିଫଳିତ ହୋଇଅଛି ।

"ଦଶହରା ପବିତ୍ର ନବମୀ ଅକ୍ଟୋବର ୧୯ ତାରିଖ ୧୯୭୪ ତୁଳିତଳ୍ପିତ ଶଯ୍ୟାରେ ଶାୟିତ ପୁରୁଷସିଂହ ବିଶ୍ୱନାଥ xx xx xx ବକ୍ଷୋପରେ ସ୍ଥାପିତ ଉତ୍କଳ ସାହିତ୍ୟର ସଦ୍ୟ ପ୍ରକାଶିତ ସଂଖ୍ୟାଟି ।

"ପୁତ୍ର ମହାନନ୍ଦ (ଚୁଇଁବାବୁ)ଙ୍କୁ ଚାହିଁ କହିଲେ, 'ଚୁଇଁ ! ଏ ମୋର ଜୀବନ ସତ୍ତାକୁ ରଖିଦେଇ ଯାଉଛି ତୋ ଜିମାରେ । ତୁ ହେବୁ ଏହାର ସମ୍ପାଦକ । ଏ ଜୀବିତ ଥିଲେ ମୁଁ ଜୀବିତ ଅଛି ବୋଲି ଜାଣିବୁ' ।"

ମହାନନ୍ଦବାବୁ ସାହିତ୍ୟିକ ନଥିଲେ । ସାହିତ୍ୟିକ ଚନ୍ଦ୍ରଶେଖର ମିଶ୍ର (ମିଶନ୍ ସ୍କୁଲର ପୂର୍ବତନ ପ୍ରଧାନ ଶିକ୍ଷକ) ଏହାର ସମ୍ପାଦକୀୟ ଲେଖୁଥିଲେ । ପଣ୍ଡିତ କୃଷ୍ଣଚନ୍ଦ୍ର କର ଲେଖାର ବର୍ଣ୍ଣାଶୁଦ୍ଧି ସଂଶୋଧନ କରି କ୍ରମ ଠିକ୍ କରୁଥିଲେ । ନିର୍ଭୁଲ ପ୍ରୁଫ୍ ଦେଖୁଥିଲେ ମୋର ପିତା ମ୍ୟାନେଜର କୁଳମଣି କର । ନିର୍ଭୁଲ ପ୍ରୁଫ୍ ଦେଖିବା ପାଇଁ ସେ ବିଶ୍ୱନାଥ କରଙ୍କ ଠାରୁ ତାଲିମ ନେଇଥିଲେ । ପ୍ରୁଫ୍ ସଂଶୋଧନ ନିର୍ଭୁଲ କରି ମୋ ବାପା ବିଶ୍ୱନାଥଙ୍କ ଅତ୍ୟନ୍ତ ବିଶ୍ୱାସଭାଜନ ହୋଇଥିଲେ । ଏବେ ଓଡ଼ିଶା ସାହିତ୍ୟ ଏକାଡେମୀର ସଂକ୍ଷିପ୍ତ ଜୀବନୀ ପୁସ୍ତକର ଲେଖକ ଲେଖିଛନ୍ତି, କୁଳମଣି କରଙ୍କ ପ୍ରୁଫ୍ ତ୍ରୁଟି ହେତୁ ବିଶ୍ୱନାଥବାବୁ ଥରେ ପୁସ୍ତକ ସବୁ ଦାହ କରାଇଥିଲେ । ଏହା ଲେଖକଙ୍କ ଘୋର ଅଜ୍ଞତା ହେତୁ ଲିପିବଦ୍ଧ ହୋଇଛି । ପରବର୍ତ୍ତୀ କାଳରେ ମୋର ପିତା କୁଳମଣି କର ନିର୍ଭୁଲ ପ୍ରୁଫ୍ ଛାପା ପାଇଁ ପ୍ରକାଶକ ମହଲରେ ସୁପରିଚିତ ଥିଲେ ।

ବଂଶୀୟ ପୁତୁରାକୁ ପୁତ୍ରବତ ତାଲିମ ଦେଇ ମ୍ୟାନେଜର କରାଇଥିଲେ ବିଶ୍ୱନାଥବାବୁ । ଚୁଇଁ ଦଦେଇ (ମହାନନ୍ଦ କର) ବଞ୍ଚିଥିବା ପର୍ଯ୍ୟନ୍ତ ବଞ୍ଚିଥିଲା ପତ୍ରିକା "ଉତ୍କଳ ସାହିତ୍ୟ" ।

ବିଶ୍ୱନାଥ କରଙ୍କ ସମୟରେ ହୋଇଥିବା ଋଣ ଓ ଚୁଇଁ ଦଦେଇ (ମହାନନ୍ଦ କର)ଙ୍କ ବେପରୁଆ ବିଳାସବ୍ୟସନ ଜନିତ ଅପର୍ଯ୍ୟାପ୍ତ ଖର୍ଚ୍ଚ ଭାରରେ ପ୍ରେସ୍ ଓ ପତ୍ରିକା ପରହସ୍ତଗତ ହେବାବେଳେ, ବଙ୍ଗୀୟ ପୁତବଧୂ ବ୍ରାହ୍ମ କନ୍ୟା ରମଳା ଜେଠେଇଙ୍କର ସାହସ ଓ ମୋ ବାପାଙ୍କ ଆନୁଗତ୍ୟ ତଥା ନିଷ୍ଠା, ପରବର୍ତ୍ତୀ କାଳରେ ପ୍ରେସ୍‌କୁ କେବଳ ଜୀବନ୍ୟାସ ଦେଲାନାହିଁ, ଓଡ଼ିଶାର ଏକ ଅଗ୍ରଗାମୀ ଅନୁଷ୍ଠାନ ଭାବେ ଏହାକୁ ପ୍ରତିଷ୍ଠିତ କରିଥିଲା ।

ମହାନନ୍ଦ କରଙ୍କ ଏକମାତ୍ର ପୁତ୍ର ସୁନନ୍ଦ, ରବୀନ୍ଦ୍ରନାଥଙ୍କ ଗୀତିର ସାଧନାରେ ଧୂରୀଣ ହୋଇ 'ରବୀନ୍ଦ୍ର ଜୟନ୍ତୀ'ର ବଡ଼ପଣ୍ଡା ଥିବାବେଳେ, ମୁଁ ଥିଲି 'ଉପେନ୍ଦ୍ର ଭଞ୍ଜ ଜୟନ୍ତୀ'ର ଆଗୁଆ ପାଇକ । ତଥାପି, ଆମର ପାରିବାରିକ ବନ୍ଧନ ଅତୁଟ ରହିଥିଲା ।

ବିଶ୍ୱନାଥଙ୍କ ଭଞ୍ଜ ବିରୋଧୀ ଲେଖା ମୋର ସାହିତ୍ୟଗୁରୁ ବିଚ୍ଛନ୍ଦ ପଟ୍ଟନାୟକଙ୍କୁ ଉତ୍‌କ୍ଷିପ୍ତ କରିଥିଲା । ସେହି ବଂଶରୁ ଜଣେ ଭଞ୍ଜ ଭକ୍ତ ହେବା ଦେଖି ସେ ଗଡ଼ ଜିତିଛନ୍ତି ବୋଲି ଭାବିଥିଲେ ।

ସ୍ୱର୍ଗତ ବିଶ୍ୱନାଥଙ୍କ ଭଞ୍ଜ ସମ୍ବନ୍ଧୀୟ ବିରୋଧ ମନୋଭାବର ମୁଁ ବିରୋଧୀ ଥିଲେ ହେଁ ଆମ ବଂଶର ଗୌରବ ସେହି ମହାନ୍ ପ୍ରତିଭାଧରଙ୍କ ବିରୋଧରେ କୌଣସି ସଭାରେ ମୁଁ କେବେହେଲେ ସ୍ୱର ଉତ୍ତୋଳନ କରିନାହିଁ ।

ପିତୃକୁଳ ଅପେକ୍ଷା ମାତୃକୁଳକୁ ନେଇ ସେ ଥିଲେ ଆମର ଅତି ନିକଟତର । ତାଙ୍କ ଭଉଣୀ ମୋ ମାଆଙ୍କ ଜେଠେଇ (ବଡ଼ବାପାଙ୍କ ସ୍ତ୍ରୀ) ଥିଲେ । ତାଙ୍କ ସାନଭାଇ କୃଷ୍ଣ କରଙ୍କ କନ୍ୟା ମୋ ମାଆଙ୍କ ମାଇଁ ଥିଲେ । ବହୁ କାଳର ସମ୍ପର୍କ ହେତୁ ବିଶ୍ୱନାଥଙ୍କ ପତ୍ନୀ ଜାହ୍ନବୀଦେବୀଙ୍କୁ ମଧ୍ୟ ମୁଁ ଦେଖିଛି ଓ ତାଙ୍କ ସ୍ନେହ ପାଇଛି ।

ତାଙ୍କ ନିଜ ଭାଇ କୃଷ୍ଣ କର ଓ ପରିବାରର ଦଦେଇ ପୁଅ ଭାଇ ରାମଚନ୍ଦ୍ର କର ଓ ଲକ୍ଷ୍ମଣ କରଙ୍କ ପରିବାର ସହ ସମ୍ପର୍କରେ ମୁଁ ବାନ୍ଧି ହୋଇଛି । ସର୍ବୋପରି ବଙ୍କ କନ୍ୟା ପୁତ୍ରବଧୂ ରମଳା କର ଏକ ସ୍ମରଣୀୟା ଚରିତ୍ର । ଖୋଦ ନାତି ସୁସାହିତ୍ୟିକ ସୁନନ୍ଦ ଦୁଇବର୍ଷ କାଳ "ଉତ୍କଳ ସାହିତ୍ୟ"ର ପୁନଃ ପ୍ରଚଳନ କରି ସୁସମ୍ପାଦନା କରିଥିଲେ । ସୁନନ୍ଦ କରଙ୍କ ପତ୍ନୀ ନିରୂପମା (ସ୍ୱର୍ଗତ ରାଜକିଶୋର ରାୟଙ୍କ ପତ୍ନୀଙ୍କ କନିଷ୍ଠା ଭଗ୍ନୀ) ମଧ୍ୟ ଲେଖିକା । ସୁନନ୍ଦ (ଗୋରାନନା)ଙ୍କ ବେପରୁଆ ଖର୍ଚ୍ଚ ଓ ଋଣ ପାଇଁ ଋଣଦାତାଙ୍କ ଠାରେ ମାନି ହୋଇଥିବା ମୋ ବାପାଙ୍କ ଠାରୁ ସୁବାରାଓ ଓକିଲ ଟଙ୍କା ଆଦାୟ କଲେ ।

ବିଶ୍ୱନାଥଙ୍କ ବ୍ରାହ୍ମଣ ପୁତ୍ର ମାୟାଧରଙ୍କ ପୁତ୍ର କ୍ଷିତୀନ୍ଦ୍ର ଓ ରବୀନ୍ଦ୍ର ନାଲିସ୍ କରି ଡିକ୍ରି ନେବାରୁ ସର୍ବସ୍ୱାନ୍ତ ଓ ବିପର୍ଯ୍ୟସ୍ତ ହେଲେ ବ୍ରାହ୍ମ ବିଶ୍ୱନାଥଙ୍କ ଦାୟାଦ ସୁନନ୍ଦ । ବହୁତ କବିତା, ଗଳ୍ପ ଓ ଗଦ୍ୟର ରଚକ ହୋଇ ମଧ୍ୟ କେହି ଆଜି ସୁନନ୍ଦ (ଗୋରାନନା)ଙ୍କୁ ମନେ ପକାଉନାହାନ୍ତି । ବିଶିଷ୍ଟ କବି ମଧୁସୂଦନ ରାଓଙ୍କ ନାତି ଭାନୁଜୀ ରାଓ ଓ ସୁନନ୍ଦ କର ଅନ୍ତରଙ୍ଗ ବନ୍ଧୁ ଓ କବିତା ରଚନାରେ ସମଧର୍ମା ଥିଲେ । "ଭାଗ୍ୟଂ ଫଳତି ସର୍ବତ୍ର ନ ଚ ବିଦ୍ୟା ନ ଚ ପୌରୁଷମ୍ ।"

"ଆତ୍ମଚରିତ"ରେ କେଉଁ ପରିସ୍ଥିତିରେ ବିଶ୍ୱନାଥ କର ବ୍ରାହ୍ମ ହେଲେ ତାହା ସେ ନିଜେ ବିଷଦ ଭାବରେ ବର୍ଣ୍ଣନା କରିଛନ୍ତି । ପ୍ରଚଳିତ ହିନ୍ଦୁ ଧର୍ମର ଜାତିଆଣ ଭାବ, ସାଧନା ନ ଥାଇ କେବଳ କ୍ରିୟାକର୍ମର ବହୁଳତା, ସ୍ୱେଚ୍ଛାଚାରିତା, ଅନାଚାର

ନିଜ ସମାଜରେ ଦେଖି ସଂସ୍କାରକ ବିଶ୍ୱନାଥ ଅତିଷ୍ଠ ହୋଇପଡ଼ିଥିଲେ । ହୁଏତ ମଧୁବାବୁଙ୍କ ଭଳି ସେ ଖ୍ରୀଷ୍ଟିଆନ୍ ମଧ ହୋଇଯାଇଥାନ୍ତେ । ମୋ ପିଲାବେଳେ ଲୋକମାନେ କହିବା ଶୁଣିଛି, "ସେ ପଇତା ଛିଣ୍ଡାଇ କିରାସିନି ହୋଇଗଲେ ।" ଖ୍ରୀଷ୍ଟିଆନ୍ ହେବା ଅର୍ଥରେ ସାଧାରଣ ମହିଳାମାନେ ଏ 'କିରାସିନି' ଶବ୍ଦ ବ୍ୟବହାର କରୁଥିଲେ । ବ୍ରାହ୍ମଧର୍ମ ଯେ ଏକ ସଂସ୍କାରିତ ହିନ୍ଦୁଧର୍ମ ଓ ବେଦାନ୍ତ ପ୍ରତିଷ୍ଠିତ ମତବାଦ, ତାହା ବିଶେଷ ଭାବେ ଜନସାଧାରଣଙ୍କୁ ଜଣା ନ ଥିଲା । ଋଷିପ୍ରାଣ ମଧୁସୂଦନ ରାଓଙ୍କ ପ୍ରଭାବରେ ବିଶ୍ୱନାଥ ବ୍ରାହ୍ମ ହୋଇଥିଲେ । ସେତେବେଳେ ବ୍ରାହ୍ମଧର୍ମର ପ୍ରାକ୍କାଳ । ଉପାସନା ଓ ଅନ୍ୟାନ୍ୟ ଆଚରଣବିଧିର ପ୍ରଣୟନ ହୋଇନଥିଲା । ପରବର୍ତ୍ତୀ କାଳରେ ବ୍ରାହ୍ମଧର୍ମର ଆଚାର୍ଯ୍ୟ ଆସି ବିବାହ ତଥା ମୃତ୍ୟୁ ସମ୍ପର୍କିତ ଉପାସନା କଲାବେଳେ, ମୁଁ ସେଭଳି ଅଧିବେଶନମାନଙ୍କରେ ଯୋଗ ଦେଇଛି ।

"ଆତ୍ମଚରିତ"ରେ ବ୍ରାହ୍ମ ମତବାଦର ଦାର୍ଶନିକ ବିଶ୍ଳେଷଣ ଅତି ସୁନ୍ଦର ଭାବରେ କରିଛନ୍ତି ବିଶ୍ୱନାଥ କର ।

ବୌଦ୍ଧଧର୍ମ ଭଳି ବ୍ରାହ୍ମ ମତବାଦ କୋଲକାତା ଏବଂ ଓଡ଼ିଶାରେ ବିଶେଷ ଭାବରେ ମୁଣ୍ଡ ଟେକିଥିଲା ଓ ପରବର୍ତ୍ତୀ କାଳରେ ସେହି ମତାବଲମ୍ବୀମାନେ ହିନ୍ଦୁ ମତବାଦର ଆଚରଣକୁ ଗ୍ରହଣ କରିବାରୁ ବ୍ରାହ୍ମଧର୍ମ ବର୍ତ୍ତମାନ କେବଳ ଆନୁଷ୍ଠାନିକ ଭାବେ ବଞ୍ଚିଛି । ଏବେ ମଧ କଟକର କାଜି ବଜାରରେ ଏହାର ଆଶ୍ରମ ତିଷ୍ଠି ରହିଛି ।

ରମଣା କର ଯେତେବେଳେ କଟକର ଡାକ୍ତରଖାନାରେ ଶେଷନିଶ୍ୱାସ ତ୍ୟାଗ କଲେ ମୁଁ, ମୋ ତଳ ଭାଇ ଶରତ ଓ ପ୍ରଭାତ ତାଙ୍କ ମରଶରୀରକୁ ଆମ ଘରକୁ ନେଇ ସତୀଚଉରାରେ ଦାହ କରାଇଥିଲୁ । ସୁନନ୍ଦଙ୍କ ପୁତ୍ର ଅରବିନ୍ଦ ଓ ତା'ର ଭଉଣୀ ସେଥିରେ ଯୋଗ ଦେଇଥିଲେ । ମୋ ପ୍ରସ୍ତାବ ଅନୁସାରେ ତାଙ୍କର ଶୁଦ୍ଧିକ୍ରିୟା ହିନ୍ଦୁ ମତରେ ନ ହୋଇ ବ୍ରାହ୍ମ ମନ୍ଦିରର ପୂଜକଙ୍କ ଦ୍ୱାରା ଅନୁଷ୍ଠିତ ହୋଇଥିଲା ।

ଏ ସମ୍ପର୍କରେ ମୋର ମନକୁ ଆସୁଛି ଯେ, ବିଶ୍ୱନାଥ କର ବଙ୍ଗୀୟ ବ୍ରାହ୍ମ ସମାଜର ପ୍ରବୀଣ ବ୍ୟକ୍ତି କେଶବଚନ୍ଦ୍ର ସେନ୍‌ଙ୍କୁ ଆଦର୍ଶ ଭାବରେ ଗ୍ରହଣ କରିଥିଲେ ଓ ତାଙ୍କ ସମ୍ପର୍କରେ ସେ ଏକ ସ୍ୱତନ୍ତ୍ର ପ୍ରବନ୍ଧ ରଚନା କରିଥିଲେ । ଏ ସମ୍ବନ୍ଧରେ କହିବାକୁ ଇଚ୍ଛା ହେଉଛି ଯେ, କେଶବଚନ୍ଦ୍ର ପରମହଂସ ରାମକୃଷ୍ଣଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । କେଶବଚନ୍ଦ୍ର ସେନ୍ ଓ ବିଜୟକୃଷ୍ଣ ଗୋସ୍ୱାମୀଙ୍କ ଯୋଗୁଁ ରାମକୃଷ୍ଣ ପରମହଂସ ବ୍ରାହ୍ମ ସମାଜକୁ ଯାଉଥିଲେ । ବ୍ରାହ୍ମ ସମାଜର ବେଦୀ ଉପରେ ବ୍ରାହ୍ମଧର୍ମର ଆଚାର୍ଯ୍ୟ ପରଂବ୍ରହ୍ମଙ୍କର ଉପଦେଶ ଦେଇ ବେଦାନ୍ତର ମହାମନ୍ତ୍ର ଉଚ୍ଚାରଣ କରିବା ସମୟରେ,

ରାମକୃଷ୍ଣ ଭାବରେ ନିମଗ୍ନ ହୋଇଯାଉଥିଲେ । ଆଚାର୍ଯ୍ୟ କହୁଥିଲେ, "ସତଜ୍ଞାନ ମନନ୍ତଂ ବ୍ରହ୍ମ; ଆନନ୍ଦ ରୂପମମୃତଂ ଯତ୍ ବିଭାତି; ଶାନ୍ତମ୍ ଶିବମଦ୍ୱୈତମ୍, ଶୁଦ୍ଧମପାପ ବିଦ୍ଧମ୍ ।" ଏହି ମନ୍ତ୍ରର କିଛି ସମୟ ପରେ ଧ୍ୟାନ ହେଉଥିଲା ଓ ତା' ପରେ କୀର୍ତ୍ତନ ହେଉଥିଲା । କୀର୍ତ୍ତନ ସମୟରେ ପ୍ରେମାନନ୍ଦରେ ମତ୍ତ ହୋଇ ରାମକୃଷ୍ଣ ନୃତ୍ୟ କରୁଥିଲେ । ଶ୍ରୀ ବିଜୟକୃଷ୍ଣ ଓ ଅନ୍ୟାନ୍ୟ ବ୍ରାହ୍ମଭକ୍ତ ତାଙ୍କୁ ବେଢ଼ି ନାଚୁଥିଲେ । ବ୍ରାହ୍ମଧର୍ମର ବିସ୍ତାର ହେତୁ ଶିକ୍ଷିତ ହିନ୍ଦୁମାନେ ଖ୍ରୀଷ୍ଟିଆନ୍ ନ ହୋଇ ହିନ୍ଦୁଭାବେ ରହିଗଲେ । ବିଶ୍ୱନାଥ କର ଏହି ଆଦ୍ୟକାଳ ବ୍ରାହ୍ମ ମତବାଦର ବିଶିଷ୍ଟ ପ୍ରବର୍ତ୍ତକ ଓ ପ୍ରବଚକ ଥିଲେ ।

ରାଜା ରାମମୋହନ ରାୟଙ୍କ ପ୍ରବର୍ତ୍ତିତ ବ୍ରାହ୍ମଧର୍ମର ଉନ୍ନତ ମୂଲ୍ୟବୋଧ ଆଜି ଭାରତବର୍ଷରୁ ଅପସରି ଯାଉଅଛି । ହିନ୍ଦୁ ଭେକଧାରୀ ବ୍ୟକ୍ତିମାନଙ୍କଠାରେ ବର୍ତ୍ତମାନ ସନାତନ ଧର୍ମର କୌଣସି ସତ୍ତା ନ ଥିବା ଦେଖି ଅତ୍ୟନ୍ତ ଦୁଃଖ ଲାଗୁଛି ଓ ଏ ପରିସ୍ଥିତିରେ ସେକାଳରେ ଉପବୀତ ତ୍ୟାଗ କରି ବେଦାନ୍ତ ଧର୍ମର ବାର୍ତ୍ତାକୁ ତୋଳି ଧରିଥିବା ବିଶ୍ୱନାଥ କର ଆମ ସ୍ମରଣରେ ଆସୁଛନ୍ତି ।

ଉପର କଥିତ ମତେ କେନ୍ଦ୍ରୀୟ ସାହିତ୍ୟ ଅକାଦେମୀ ପ୍ରକାଶିତ ଅଧ୍ୟାପିକା ଅର୍ଚ୍ଚନା ନାୟକଙ୍କ "ନିର୍ବାଚିତ ରଚନାବଳୀ–ବିଶ୍ୱନାଥ କର" ପୁସ୍ତକରୁ ବିଶ୍ୱନାଥ କରଙ୍କ ପ୍ରତିଭା-ପରିଚୟ ସମ୍ବନ୍ଧୀୟ କେତେକ ଉଦ୍ଧୃତି ଦେଉଅଛି ।

## "ନିର୍ବାଚିତ ରଚନାବଳୀ ପୁସ୍ତକରୁ କର୍ମମୟ ଜୀବନୀ"

"ବିଶ୍ୱନାଥଙ୍କର କର୍ମମୟ ଜୀବନର ଅୟମାରମ୍ଭ ହୁଏ ୧୮୮୬ ମସିହା ଜାନୁୟାରୀ ମାସରେ । ଜଗତସିଂହପୁର ଅଞ୍ଚଳର ବିରୋଳ ଗ୍ରାମରେ ଥିବା ସ୍କୁଲରେ ସେ ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । କିନ୍ତୁ ସେଠାରେ ତାଙ୍କ ନୂତନ ଧର୍ମାଚରଣରେ ନାନା ସମସ୍ୟା ଦେଖାଦେଲା । ସେ ଅନୁଭବ କଲେ ସେଠାରେ ଥିବା ପର୍ଯ୍ୟନ୍ତ ସେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇପାରିବେ ନାହିଁ । ତେବେ ୧୮୮୭ ଚୈତ୍ର ପୂର୍ଣ୍ଣିମା ଦିନ ତାଙ୍କର ଜନ୍ମଗ୍ରହଣ କରିଥିବା ପ୍ରଥମ ପୁତ୍ରର ଜନ୍ମୋତ୍ସବ ପାଳନରେ ସେ ସମସ୍ତ ରୀତିନୀତିକୁ ଭାଙ୍ଗି ତାଙ୍କ ସଂସ୍କାର-ମନୋଭାବର ସ୍ୱଷ୍ଟ ପରିଚୟ ଦେଇଥିଲେ ।

"ସେହିବର୍ଷ ସେ ବିରୋଳ ପରିତ୍ୟାଗ କଲେ ଓ କଟକର ମିଶନ୍ ସ୍କୁଲରେ ସହକାରୀ ଶିକ୍ଷକ ଭାବେ କାର୍ଯ୍ୟ ଆରମ୍ଭ କଲେ । ଏହି ସମୟରେ ହିଁ ସେ ନିଜ ସ୍କନ୍ଧରୁ

ବ୍ରାହ୍ମଣର ଉପବୀତ ଛିନ୍ନ କରି ବ୍ରାହ୍ମଧର୍ମ ଗ୍ରହଣ ପୂର୍ବକ ଏହାର ପ୍ରସାର କର୍ମରେ ନେତୃତ୍ୱ ଗ୍ରହଣ କଲେ । ପୁଣ୍ୟାତ୍ମା ମଧୁସୂଦନଙ୍କ ଅନୁରୋଧ ରକ୍ଷା କରି ସେ ମିଶନ୍ ସ୍କୁଲର ଶିକ୍ଷକତା ଛାଡ଼ି ଟାଉନ୍ ସ୍କୁଲର ପ୍ରଧାନଶିକ୍ଷକର ଦାୟିତ୍ୱ ଗ୍ରହଣ କରିଥିଲେ ।

"ଟାଉନ୍ ସ୍କୁଲର ଶିକ୍ଷକତା କରୁଥିବାବେଳେ ସେ ଛାତ୍ରମାନଙ୍କର ଚରିତ୍ର ଗଠନ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ତାଙ୍କୁ ଶିକ୍ଷକ ଭାବରେ ପାଇ ଛାତ୍ରମାନେ ନିଜକୁ ଗୌରବାନ୍ୱିତ ମନେ କରୁଥିଲେ । ଏହି ସମୟ ମଧ୍ୟରେ ପାଟନାର ବ୍ରାହ୍ମ ସମ୍ମିଳନୀରେ ଯୋଗ ଦେବାର ଥିଲା ତାଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଟ୍ରେନିଂ ସ୍କୁଲର ଅଧ୍ୟକ୍ଷ ଭକ୍ତକବି ମଧୁସୂଦନ ରାଓଙ୍କ ଦ୍ୱାରା କଟକରେ ବ୍ରାହ୍ମଧର୍ମାବଲମ୍ବୀମାନଙ୍କ ପାଇଁ ଏକ ଆଲୋଚନା ସଭା ସ୍ଥାପିତ ହୋଇଥିଲା । ଏହି ସଭାର ସମ୍ପାଦକ ଥିଲେ ଚନ୍ଦ୍ରମୋହନ ମହାରଣା ଓ ବିଶ୍ୱନାଥ ଏହାର ପରିଚାଳନାରେ ସକ୍ରିୟ ଭୂମିକା ଗ୍ରହଣ କରିଥିଲେ । ଏହା ବ୍ୟତୀତ ସେ କଟକରୁ ବାହାରି କୋଟରୀ, ଦେବଗଡ଼ ଓ ଢେଙ୍କାନାଳ ପ୍ରଭୃତି ଅଞ୍ଚଳରେ ବ୍ରାହ୍ମଧର୍ମ ଉପରେ ବକ୍ତୃତାମାନ ପ୍ରଦାନ କରିଥିଲେ । ସମ୍ବଲପୁର ହିତୈଷିଣୀରେ ଏହି ସମୟ କାଳ ମଧ୍ୟରେ ତାଙ୍କର ବ୍ରାହ୍ମଧର୍ମ ଉପରେ କେତେକ ଗୁରୁତ୍ୱପୂର୍ଣ୍ଣ ରଚନା ପ୍ରକାଶ ପାଇଥିଲା ।

"ବିଶ୍ୱନାଥ କର ଓଡ଼ିଆ ପ୍ରବନ୍ଧ ସାହିତ୍ୟ ଇତିହାସରେ ଜଣେ ସ୍ମରଣୀୟ ପ୍ରତିଭା । ଉତ୍କଳ ସାହିତ୍ୟର ସମ୍ପାଦନା ପୂର୍ବରୁ ସେ ଜଣେ ଯଶସ୍ୱୀ ପ୍ରାବନ୍ଧିକ ଭାବରେ ଓଡ଼ିଆ ସାହିତ୍ୟରେ ନିଜର ବଳିଷ୍ଠ ପରିଚୟ ଦେଇସାରିଥିଲେ । ତାଙ୍କର ଶିକ୍ଷକତାର ଶେଷ ଦ୍ୱାଦଶ ବର୍ଷ ଭିତରେ ମୁଖ୍ୟତଃ ରଚିତ ପ୍ରବନ୍ଧଗୁଡ଼ିକର ସଂକଳନ "ବିବିଧ ପ୍ରବନ୍ଧ" ନାମରେ ୧୮୯୬ ମସିହାରେ କଟକ ରାୟ ପ୍ରେସ୍‌ରେ ମୁଦ୍ରିତ ହୋଇ ଆତ୍ମପ୍ରକାଶ କରିଥିଲା । ଏଥିରେ ପ୍ରକାଶିତ ହୋଇଥିଲା ୨୦ଟି ପ୍ରବନ୍ଧ । ତନ୍ମଧ୍ୟରୁ 'ସ୍ୱାଧୀନ ଚିନ୍ତା', 'ଆଶାରେ ସ୍ୱାଧୀନତା', 'ମହାସ୍ରୋତ', 'ରାକ୍ଷସୀ ଲୀଳା', 'ସ୍ତ୍ରୀ ଶିକ୍ଷା' ଓ 'ଅନନ୍ତ ପ୍ରେମ' ପ୍ରଭୃତି ପାଞ୍ଚୋଟି ପ୍ରବନ୍ଧ "ଉତ୍କଳ ପ୍ରଭା"ରେ ଓ ଅନ୍ୟ ସମସ୍ତ ପ୍ରବନ୍ଧ ପ୍ରକାଶିତ ହୋଇଥିଲା "ସମ୍ବଲପୁର ହିତୈଷିଣୀ" ପତ୍ରିକାରେ । ଶେଷୋକ୍ତ ପତ୍ରିକାରେ ଏକ ଦୀର୍ଘ ଭ୍ରମଣ କାହାଣୀ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ପତ୍ରିକାରେ ଏକ ଦୀର୍ଘ ଜୀବନୀମୂଳକ ପ୍ରବନ୍ଧ ମଧ୍ୟ ଏହି ସମୟରେ ବିଶିଷ୍ଟ କୃତି ଭାବରେ ବିବେଚିତ ହୁଏ ।

ବିଶ୍ୱନାଥ କରଙ୍କ ଗଦ୍ୟଶୈଳୀ ସ୍ପଷ୍ଟ, ସ୍ୱଚ୍ଛନ୍ଦ ଓ ବଳଶାଳୀ । ତାଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଏହିପରି ଉଚ୍ଚମାନର ଭାବୋଦ୍ଦୀପକ ପ୍ରବନ୍ଧର ଯେ ଅଭାବ ଥିଲା, ଏହା ନିଃସନ୍ଦେହରେ କୁହାଯାଇପାରେ ।"

"ଓଡ଼ିଶାର ପତ୍ରପତ୍ରିକାର ଇତିହାସରୁ ଜଣାଯାଏ 'ଉତ୍କଳ ସାହିତ୍ୟ' ପ୍ରକାଶ ପୂର୍ବରୁ ଓଡ଼ିଆ ସାହିତ୍ୟର ବିକାଶ କଳ୍ପେ ଯେଉଁ ସାହିତ୍ୟ ପତ୍ରିକାମାନ ଆତ୍ମପ୍ରକାଶ କରିଥିଲା, ସେଗୁଡ଼ିକ ବେଶିଦିନ ତିଷ୍ଠି ରହିପାରିଲା ନାହିଁ । ଏହାର ମୁଖ୍ୟ କାରଣ ଥିଲା ସାଂଗଠନିକ ଦକ୍ଷତାର ଅଭାବ, ଆର୍ଥିକ ସଂକଟ ଓ ଉଚ୍ଚମାନ ଲେଖାର ଅଭାବ । ସେ ସମୟରେ ପତ୍ରିକାଟିଏ ପ୍ରକାଶ କରିବା ଅପେକ୍ଷା ତାକୁ ବଞ୍ଚାଇ ରଖିବା ଥିଲା ଅଧିକ ଗୁରୁତ୍ୱପୂର୍ଣ୍ଣ ।"

"'ଉତ୍କଳ ସାହିତ୍ୟ ପତ୍ରିକା' ମାଧ୍ୟମରେ ଓଡ଼ିଆ ସାହିତ୍ୟକୁ ଉନ୍ନତ କରିବାକୁ ଆପ୍ରାଣ ଉଦ୍ୟମ କରୁଥିବା ବିଶ୍ୱନାଥଙ୍କୁ ଲକ୍ଷ୍ୟ କରି ବିଶିଷ୍ଟ ସାହିତ୍ୟିକ ମାୟାଧର ମାନସିଂହ ଲେଖିଥିଲେ, 'ସେ ଏହି ଶତାବ୍ଦୀର ତ୍ରିଂଶ ଦଶକ ପର୍ଯ୍ୟନ୍ତ ସକଳ ମୁଖ୍ୟ ଓଡ଼ିଆ କବି ଓ ଲେଖକଙ୍କର ମଧ୍ୟ ଥିଲେ ବନ୍ଧୁ, ସମର୍ଥକ ଓ ସମାଲୋଚକ । ପ୍ରାୟ ପଚାଶ ବର୍ଷ କାଳ ବିଶ୍ୱନାଥ ଥିଲେ ଓଡ଼ିଆ ସାହିତ୍ୟର କେନ୍ଦ୍ରବିନ୍ଦୁ । ତାଙ୍କର 'ଉତ୍କଳ ସାହିତ୍ୟ' ଏପରି ସମ୍ମାନିତ ପତ୍ରିକା ଥିଲା ଓ ତାଙ୍କର ମୂଲ୍ୟବୋଧର ମାନଦଣ୍ଡରେ ଲୋକଙ୍କର ଏପରି ବିଶ୍ୱାସ ଥିଲା ଯେ, କୌଣସି ତରୁଣ ଲେଖକର କବିତାଟିଏ ବା ଗଳ୍ପଟିଏ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ହୋଇପାରିଲେ କେବଳ ତାହାହିଁ ଧରାଯାଉଥିଲା ମହତ ସାର୍ଟିଫିକେଟ ଓ ସମ୍ମାନ । ଯାହାପାଇଁ ଲାଳାୟିତ ଥିଲେ ବହୁ; କିନ୍ତୁ ପାଉଥିଲେ କେବଳ ସେହି, ଯିଏ ଥିଲେ ପ୍ରକୃତ ଶକ୍ତିମାନ ।" (ଓଡ଼ିଆ ସାହିତ୍ୟର ଇତିହାସ)

"ପତ୍ରିକା ସମ୍ପାଦନା ହେଉଛି ତାଙ୍କ କର୍ମମୟ ଜୀବନର ଶ୍ରେଷ୍ଠାଂଶ । ତତ୍କାଳୀନ ଭାଷା ଓ ସାହିତ୍ୟ କ୍ଷେତ୍ରରେ ଯେଉଁ ସଂକଟ ଦେଖାଦେଇଥିଲା, ତାହାକୁ ପ୍ରତିହତ କରିବା ପାଇଁ ସେ ପ୍ରଥମେ ଅନ୍ୟମାନଙ୍କୁ ସଚେତନ କରାଇଥିଲେ ଓ ନିଜେ ତାହାର ନେତୃତ୍ୱ ନେଇଥିଲେ । ରାଧାନାଥ ରାୟଙ୍କ ଠାରୁ ଆରମ୍ଭ କରି ସଚ୍ଚି ରାଉତରାୟଙ୍କ ପର୍ଯ୍ୟନ୍ତ ଉତ୍କଳର ବହୁ ବିଶିଷ୍ଟ ସାହିତ୍ୟିକ ତାଙ୍କ ଠାରୁ ଲେଖିବାର ପ୍ରେରଣା ଲାଭ କରିଥିଲେ । 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ପ୍ରଣେତା ସ୍ୱନାମଧନ୍ୟ ପ୍ରାବନ୍ଧିକ ଗୋପାଳଚନ୍ଦ୍ର ପ୍ରହରାଜ ସ୍ୱୀକାର କରିଛନ୍ତି 'ମୁଁ ତାଙ୍କ ବଚନରେ ଉତ୍ସାହିତ ହୋଇ କାହାଣୀ ଲେଖିବା ଆରମ୍ଭ କଲି । ଏଠାରେ କହିରଖିବା ଉଚିତ ଯେ, ମୁଁ ଜଣେ ଇଂରାଜୀ ଉଚ୍ଚଶିକ୍ଷାପ୍ରାପ୍ତ ଓଡ଼ିଆ ଯୁବକ ଥିଲି । ତଥାପି ମୋ ଲେଖାରେ ଇ, ଈ, ଉ, ଊ, ଶ, ଷ, ସ ଆଦି ବିଷୟରେ ଶତ ଶତ ବର୍ଣ୍ଣାଶୁଦ୍ଧି ଓ ବ୍ୟାକରଣ ଦୋଷଯୁକ୍ତ ପଦ, ବାଚ୍ୟ ଓ ପ୍ରୟୋଗମାନ ରହୁଥିଲା । ମୋ ଲିଖିତ ସନ୍ଦର୍ଭଗୁଡ଼ିକ ସେ ସହାସ୍ୟ ବଦନରେ ମୋ ଉପସ୍ଥିତିରେ ସଂଶୋଧନ କରିବା ପରେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ମୁଦ୍ରିତ ହେବାକୁ ଦେଉଥିଲେ ।"

"ଦେଶର କୁସଂସ୍କାର ଦୂରୀକରଣ ଓ ନବସଂସ୍କାର ପ୍ରବର୍ତ୍ତନ ଦିଗରେ 'ଉତ୍କଳ ସାହିତ୍ୟ'ର ଭୂମିକା ଥିଲା ବେଶ୍ ଗୁରୁତ୍ୱପୂର୍ଣ୍ଣ । ଏହି ଦୃଷ୍ଟିରୁ ନନ୍ଦକିଶୋର ବଳଙ୍କର ବ୍ୟଙ୍ଗ କବିତା "ଓଡ଼ିଆ ଲଳନା" ଓ ଗୋପାଳଚନ୍ଦ୍ର ପ୍ରହରାଜଙ୍କର "ଭାଗବତଟୁଙ୍ଗୀରେ ସନ୍ଧ୍ୟା" ଭଳି ଉଚ୍ଚମାନର ରଚନା ଉଲ୍ଲେଖଯୋଗ୍ୟ । ବିଶ୍ୱନାଥ କର ଓଡ଼ିଆ ଲୋକସାହିତ୍ୟର ମଧ୍ୟ ଥିଲେ ଜଣେ ସହୃଦୟ ପୃଷ୍ଠପୋଷକ ।"

"ଉତ୍କଳ ସାହିତ୍ୟ ୧୯୨୦ ମସିହା ବେଳକୁ ଖ୍ୟାତିରେ ସର୍ବୋଚ୍ଚ ଶିଖର ଆରୋହଣ କରିଥିଲା । ରାଧାନାଥ, ଫକୀରମୋହନ ଓ ମଧୁସୂଧନଙ୍କର ମୃତ୍ୟୁ ପରେ ଓଡ଼ିଆ ସାହିତ୍ୟରେ ଯେଉଁ ବ୍ୟାପକ କ୍ଷତି ଘଟିଲା, ବିଶ୍ୱନାଥ କର ସେହି ଶୂନ୍ୟତାକୁ ପୂରଣ କରିବା ପାଇଁ ପତ୍ରିକା ମାଧ୍ୟମରେ ସାହିତ୍ୟ ସ୍ରଷ୍ଟାମାନଙ୍କୁ ଉତ୍ସାହ ଓ ପ୍ରେରଣା ଯୋଗାଇଥିଲେ । ପରବର୍ତ୍ତୀ ସମୟରେ ସତ୍ୟବାଦୀର ସାଧକତ୍ରୟ, ସବୁଜ ପଞ୍ଚସଖା, ମାୟାଧର ମାନସିଂହ, କୁନ୍ତଳା କୁମାରୀ ସାବତ, ରାଧାମୋହନ ଗଡ଼ନାୟକ, ସଚ୍ଚି ରାଉତରାୟ ଓ ପଦ୍ମଚରଣ ପଟ୍ଟନାୟକ ପ୍ରଭୃତି 'ଉତ୍କଳ ସାହିତ୍ୟ' ପୃଷ୍ଠାକୁ ବିମଣ୍ଡିତ କରିଥିଲେ । କବି ଅନ୍ନଦାଶଙ୍କର ରାୟ ସ୍ୱୀକାର କରିଥିଲେ—"ତଥାପି ସେ ଆମ୍ଭମାନଙ୍କର ଫ୍ରେଣ୍ଡ, ଫିଲୋସଫର ଓ ଗାଇଡ୍ ଥିଲେ ଆଜୀବନ । xx xx xx ତାଙ୍କର ସ୍ନେହ ଆମମାନଙ୍କର ଚିରସ୍ମରଣୀୟ ସଂପଦ ।"(ସାହିତ୍ୟ ସ୍ମୃତି, ସବୁଜ ଅକ୍ଷର, ପୃଷ୍ଠା-୨୪୯)

"ବାସ୍ତବିକ ଉତ୍କଳ ସାହିତ୍ୟର ସାରସ୍ୱତ ପୀଠରେ ପ୍ରବୀଣ ଓ ତରୁଣ ଉଭୟ ପିଢ଼ିର ସାହିତ୍ୟିକଙ୍କୁ ଏକତ୍ର କରି ଓଡ଼ିଆ ସାହିତ୍ୟର ସାମୂହିକ ବିକାଶ ଉପରେ ସେ ଧ୍ୟାନ ଦେଇଥିଲେ । 'ଉତ୍କଳ ସାହିତ୍ୟ'ର ମୁଦ୍ରକ ଭାବରେ ସେ ଥିଲେ ଅତୁଳନୀୟ ଆଦର୍ଶର ଅଧିକାରୀ । ତାଙ୍କର ସାରସ୍ୱତ ପରିବାରରେ ପାରସ୍ପରିକ ମତଭେଦ ଥିବା ସତ୍ତ୍ୱେ ସମସ୍ତେ ଓଡ଼ିଆ ସାହିତ୍ୟର ଗୁଣାତ୍ମକ ତଥା ପରିମାଣାତ୍ମକ ବିକାଶକୁ ଏକ ଜାତୀୟ କର୍ତ୍ତବ୍ୟ ବୋଲି ମନେ କରୁଥିଲେ ।

"ଦୀର୍ଘ ୩୮ ବର୍ଷକାଳ ବିଶ୍ୱନାଥ କର ଥିଲେ ଓଡ଼ିଆ ଜାତୀୟ ଜୀବନର ଅନ୍ୟତମ ସାରଥି । କେବଳ ପ୍ରାଦେଶିକ ସ୍ତରରେ ନୁହେଁ, ଜାତୀୟ ସ୍ତରରେ ମଧ୍ୟ ସେ ବିଭିନ୍ନ ଆନ୍ଦୋଳନକୁ ଆନ୍ତରିକ ଓ ଦୃଢ ସମର୍ଥନ ଜଣାଉଥିଲେ । ୧୯୦୫ରେ ବଙ୍ଗ ଭଙ୍ଗ ପରେ ସେ ଏହାର ତୀବ୍ର ପ୍ରତିବାଦ କରି କଟକ ସହରରେ ଆନ୍ଦୋଳନକୁ ଭିନ୍ନ ରୂପ ଦେଇଥିଲେ । ୧୯୧୧ ପରଠାରୁ ସେ ପାଞ୍ଚବର୍ଷ ପାଇଁ ବିହାର-ଓଡ଼ିଶା କାଉନ୍‌ସିଲର ଜଣେ ସଭ୍ୟ ଭାବରେ ନିର୍ବାଚିତ ହୋଇଥିଲେ । ବ୍ୟବସ୍ଥାପକ ସଭାରେ ପ୍ରଥମେ ଓଡ଼ିଆରେ ବକ୍ତବ୍ୟ ଦେଇ ସେ ନିଜର ମାତୃଭାଷା ପ୍ରତି ମମତା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ । ସେକାଳର ବ୍ୟବସ୍ଥା ସଭାରେ ସେପର୍ଯ୍ୟନ୍ତ କେବଳ ଇଂରାଜୀରେ ଭାଷଣ ଦେବାର

ରୀତି ଚାଲିଥିଲା । ତେଣୁ ବିଶ୍ୱନାଥ କରଙ୍କ ଓଡ଼ିଆ ଭାଷଣ ବିରୋଧରେ ସଭ୍ୟମାନେ ପ୍ରତିବାଦର ସ୍ୱର ଉଠାଇଥିବାରୁ ବିଶ୍ୱନାଥ ଦୃଢ଼ତାର ସହିତ ଖଣ୍ଡନ କରିଥିଲେ ।"

"ସ୍ୱଂୟ ଲାଟ୍‌ସାହେବ ଏ ବିବାଦର ସମାଧାନ କରି ବିଶ୍ୱନାଥଙ୍କୁ ଓଡ଼ିଆରେ କହିବାର ସୁଯୋଗ ଦେଲେ । ଯେଉଁ ବକ୍ତୃତା ପ୍ରସଙ୍ଗରେ ଥରେ ଧବଲେ ସାହେବ୍ ଲକ୍ଷ୍ମୀନାରାୟଣ ସାହୁଙ୍କୁ କହିଥିଲେ, 'ମିଷ୍ଟର ସାହୁ ! ମୁଁ ବିଲାତର ପାର୍ଲାମେଣ୍ଟରେ ଓ ଭାରତରେ ଅନେକ ଲୋକଙ୍କ ବକ୍ତୃତା ଶୁଣିଛି; କିନ୍ତୁ ଏପରି ବକ୍ତୃତା କେବେ ଶୁଣି ନଥିଲି । କି ଶକ୍ତିଶାଳୀ ବିଶ୍ୱନାଥ କର !"

"ସମାଜର ବିଭିନ୍ନ କ୍ଷେତ୍ରରେ ସେ ନିଷ୍ଠାପର ଭାବରେ କାର୍ଯ୍ୟ କରିଛନ୍ତି । କଟକର ରେଭେନ୍ସା କଲେଜ, ମେଡିକାଲ ସ୍କୁଲ, ଇଂଜିନିୟରିଂ ସ୍କୁଲ, ପ୍ୟାରୀମୋହନ ଏକାଡେମୀ, କଟକ ନର୍ମାଲ ସ୍କୁଲ ଓ ଟ୍ରେନିଂ କଲେଜ ପ୍ରଭୃତି ଶିକ୍ଷାନୁଷ୍ଠାନର ମ୍ୟାନେଜିଂ କମିଟି ଏବଂ ଜିଲ୍ଲା ବୋର୍ଡ, ମ୍ୟୁନିସିପାଲିଟି ଓ ବିହାର-ଓଡ଼ିଶା ପାଠ୍ୟ ପୁସ୍ତକ ସଭାର ସେ ଥିଲେ ସଦସ୍ୟ । ବ୍ରାହ୍ମ ସମାଜର ସଭାପତି ଓ ଉତ୍କଳ ସାହିତ୍ୟ ସମାଜର ଉପସଭାପତି ଭାବରେ ସେ କାର୍ଯ୍ୟ କରିଥିଲେ । ଓଡ଼ିଆ ଜାତିର ମିଳନ ପୀଠ 'ଉତ୍କଳ ସମ୍ମିଳନୀ'ର ସେ ଥିଲେ ଅନ୍ୟତମ ପ୍ରବକ୍ତା ଓ ପୃଷ୍ଠପୋଷକ ।"

"୧୯୩୧ ମସିହାରେ ଇଂରେଜ ସରକାର ତାଙ୍କୁ ସମ୍ମାନଜନକ 'ରାୟସାହେବ୍' ଉପାଧିରେ ଭୂଷିତ କରିଥିଲେ ମଧ୍ୟ ସେ ତାକୁ ପ୍ରତ୍ୟାଖ୍ୟାନ କରିଥିଲେ । ୧୯୩୪ ମସିହା ଅଗଷ୍ଟ ମାସରେ ତାଙ୍କର ଶରୀର ଅସୁସ୍ଥ ହେବାକୁ ଆରମ୍ଭ କଲା । ବିଶ୍ୱନାଥ କର ତାଙ୍କ ଆତ୍ମପରିଚିତିର ଶେଷ ଭାଗରେ ଉଲ୍ଲେଖ କରିଛନ୍ତି ତାଙ୍କର ମାନସିକ ସ୍ଥିତିର କଥା– 'ଜାଣିବାର, ବୁଝିବାର, ପାଇବାର କେତେ ଥିଲା ଓ କେତେ ଅଛି, ଲାଭ ହୋଇଛି ସାମାନ୍ୟ । କରିବାର ଯାହା ଥିଲା, ସେଥିରୁ କିଛି ଯେ ହୋଇପାରିନାହିଁ । ପ୍ରତିକୂଳ ଅବସ୍ଥା ସାଙ୍ଗରେ ସଂଗ୍ରାମ କରୁ କରୁ ଜୀବନଟା ଯେ ଶେଷ ହୋଇଆସିଲା, ଆଜି ଏ ବୟସରେ ଜୀବନର ବହୁ ବ୍ୟର୍ଥତା ଚକ୍ଷୁ ସମ୍ମୁଖରେ ପ୍ରତିଭାତ ହୋଇ ଅନେକ ସମୟରେ ପ୍ରାଣକୁ ବ୍ୟାକୁଳ କରିପକାଏ' ।"

"ବିଶ୍ୱନାଥ ବିଶ୍ୱାସ କରୁଥିଲେ ମଣିଷର ବିକାଶ ବର୍ହିମୁଖୀ ବ୍ୟାପାର ଅପେକ୍ଷା ଅନ୍ତର୍ମୁଖୀନତା ଉପରେ ଅଧିକ ନିର୍ଭର କରେ । ତେଣୁ ଅନ୍ତଃସତ୍ତାର ବିକାଶ ସାଧନ ନିମନ୍ତେ ବ୍ୟକ୍ତିର ନିଷ୍ଠାପରତାର ଆବଶ୍ୟକତା କେତେ ଅଧିକ ସେ ସମ୍ପର୍କରେ ସେ ବାରମ୍ବାର ସଚେତନତା ସୃଷ୍ଟିର ପ୍ରୟାସ କରିଛନ୍ତି । ତତ୍କାଳୀନ ସାହିତ୍ୟ କ୍ଷେତ୍ରରେ ଦେଖାଦେଇଥିବା ସଂକଟର ସୂଚନା ମଧ୍ୟ ଏଥିରେ ବାରମ୍ବାର ପ୍ରକାଶ ପାଉଥିଲା । ସାହିତ୍ୟକୁ ନେଇ

ବ୍ୟବସାୟ କରିବାକୁ ପ୍ରବୃତ୍ତ ହୋଇଥିବା ଓ ଯୋଗ୍ୟତା ନ ଥାଇ ସେ କ୍ଷେତ୍ରରେ ନିଜର ଅଧିକାର ସାବ୍ୟସ୍ତ କରିବାକୁ ଅପଚେଷ୍ଟା କରୁଥିବା ବ୍ୟକ୍ତିମାନଙ୍କୁ ସେଥିରୁ ନିବୃତ୍ତ ରହିବା ପାଇଁ ସେ ସତର୍କ କରୁଥିଲେ । ଦାବିକୁ ନେଇ ସୃଷ୍ଟି ହେଉଥିବା ଆନ୍ଦୋଳନ ବିଷୟରେ ଆଲୋକପାତ କରିବାବେଳେ ସେ ଦାବିଦାରମାନଙ୍କୁ ସେମାନଙ୍କର ଦାୟିତ୍ୱ ସମ୍ପର୍କରେ ମଧ୍ୟ ଅଧିକ ଭାବରେ ସଚେତନ କରୁଥିଲେ । 'ଉତ୍କଳ ସାହିତ୍ୟ' ପତ୍ରିକାର ଦୀର୍ଘକାଳ ଧରି ସମ୍ପାଦନା କରିବା ଅବକାଶରେ 'ବିବିଧ ପ୍ରସଙ୍ଗ' କ୍ରମରେ ବହୁ ବିଷୟରେ ସେ ବିଭିନ୍ନ ସମୟରେ ଆଲୋଚନା କରିଛନ୍ତି । କିନ୍ତୁ ସବୁଥିରେ ତାଙ୍କର ଭାବ ସଂହତି ସୁରକ୍ଷିତ ରହିଛି । ତାଙ୍କର ପ୍ରତିଟି ମନ୍ତବ୍ୟ ଥିଲା ସ୍ପଷ୍ଟ । ସେଥିପାଇଁ ତାଙ୍କର ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ଜାତୀୟ ଜୀବନର ଉତ୍ତରଣ ପାଇଁ ତାଙ୍କର ସୁଚିନ୍ତିତ ପଦକ୍ଷେପ, ଧର୍ମାନ୍ଧତା ଦୂରୀକରଣର ଉଦ୍ୟମ, ବିଭିନ୍ନ ସାମାଜିକ ସମସ୍ୟାର ବିଚାର ଓ ସେ ଦିଗରେ ତାଙ୍କର ପ୍ରଦତ୍ତ ଦିଗ୍‌ଦର୍ଶନ 'ବିବିଧ ପ୍ରସଙ୍ଗ'ରୁ ଜଣାଯାଇଥାଏ ।"

"ସମାଲୋଚନା କ୍ରମରେ ଅତ୍ୟନ୍ତ ନିରପେକ୍ଷ ଭାବରେ ସେ ସମସ୍ତ ରଚନାର ଦୋଷଗୁଣ ଦର୍ଶାଇଛନ୍ତି । ବ୍ୟାକରଣଗତ ଅଶୁଦ୍ଧିରୁ ଆରମ୍ଭ କରି ବଙ୍ଗଳା ଭାଷାର ପ୍ରଭାବ ଜନିତ ଓଡ଼ିଆ ଭାଷାରେ ଦେଖାଦେଉଥିବା ସାମାନ୍ୟ ବିକୃତି ପର୍ଯ୍ୟନ୍ତ ସବୁକଥା ଉଲ୍ଲେଖ କରି ଲେଖକମାନଙ୍କୁ ସେ ଯେପରି ଗଠନଶୀଳ ସମାଲୋଚନା କରିଛନ୍ତି, ସେହିପରି କେତେକ ଉଚ୍ଚମାନର ଲେଖାକୁ ମୁକ୍ତ କଣ୍ଠରେ ପ୍ରଶଂସା କରିଛନ୍ତି ।"

ଉପରୋକ୍ତ ଉଦ୍ଧୃତି ସହ ବିଶ୍ୱନାଥବାବୁଙ୍କ ବହୁ ପ୍ରବନ୍ଧର କିଛି ସ୍ମରଣୀୟ ପଂକ୍ତି "ବିଶ୍ୱନାଥ ବାଣୀ" ହିସାବରେ ଉଦ୍ଧାର କରିବା ସମୀଚିନ ମଣୁଛି । ଏହାର ସଂଗ୍ରହରେ ଡାକ୍ତର କମଳାକାନ୍ତ କର ମୋତେ ସହାୟତା କରିଛନ୍ତି । ଏହି ବିଶ୍ୱନାଥ ବାଣୀରୁ ପାଠକବର୍ଗ ତାଙ୍କ ରଚନାର ସ୍ୱାଦ କିଞ୍ଚିତ ପ୍ରାପ୍ତ ହେବେ ଓ ତାଙ୍କର ପ୍ରଗତିଶୀଳ ଚିନ୍ତାଧାରା ସହ ପରିଚିତ ହେବେ ।

## "ବିଶ୍ୱନାଥ ବାଣୀ"

"ଜୀବନରୁ ସାହିତ୍ୟର ଉତ୍ପତ୍ତି ଏବଂ ଜୀବନ ହିଁ ସାହିତ୍ୟୋନ୍ନତିର ମୂଳ । ଯେଉଁଠାରେ ଜୀବନ ସେଇଠାରେ ଜୀବନ୍ତ ସାହିତ୍ୟ । ଜୀବନ୍ତ ସମାଜ ନିତ୍ୟ ନବ ନବ ଭାବ ଲାଭ କରି ତାହାକୁ ସାହିତ୍ୟାକାରରେ ନିବଦ୍ଧ କଲେ ତାହାର ଜୀବନୀଶକ୍ତି ସମାଜ ମଧ୍ୟରେ ସଞ୍ଚାରିତ ହୁଏ । ଏମନ୍ତ କି ବହୁ ଯୁଗ ପରେ ସୁଦ୍ଧା ସେହି ସାହିତ୍ୟର ପ୍ରଭାବ ମନୁଷ୍ୟ ଅନୁଭବ କରି ମୋହିତ ହୋଇଯାଏ ।"

"ମାନବ ଜାତି ମଧ୍ୟରେ କବି ସ୍ୱର୍ଣମଣି, ସେ ଯହିଁରେ ହାତ ଦେବେ ସେ ସୁନା ହେବ । ଆମ୍ଭେମାନେ ଯାହାକୁ ମାଙ୍କଡ଼ା ପଥର ବୋଲି ଗୋଡ଼ରେ ଆଡ଼େଇ ଦେଉଁ, କବି ଯେବେ ସେଥିରେ ଆଙ୍ଗୁଳି ସ୍ପର୍ଶ କରନ୍ତି, ତେବେ ସେହି ପୁଣି ଆମ୍ଭମାନଙ୍କ ନିକଟରେ ମରକତ ମଣି ହୋଇ ଉପସ୍ଥିତ ହୁଏ । ଆମ୍ଭେମାନେ ଦେଖି ଅବାକ୍ ହେଉ, ଯେ ଏହା କରିପାରେ ସେ ହିଁ ଉଚ୍ଚଶ୍ରେଣୀର କବି । କବି ଏ ସଂସାରରେ ଜନ୍ମନ୍ତି ସୌନ୍ଦର୍ଯ୍ୟ ଦେଖିବାକୁ ଏବଂ ତାହା ଜଗତକୁ ଦେଖାଇବାକୁ ।"

"ଆମ୍ଭେମାନେ ସାଧାରଣତଃ ଦୁଇଶ୍ରେଣୀର କବି ଦେଖିବାକୁ ପାଉଁ । ଏକ ଶ୍ରେଣୀର କବି ଆପଣାର ଦେଶ ଓ ସମୟର ସୀମା ମଧ୍ୟରେ ଥାଇ କାବ୍ୟ ପ୍ରଣୟନ କରନ୍ତି-ସୁତରାଂ ସେମାନଙ୍କ କାବ୍ୟ ସବୁ ଦେଶ ବା ସବୁ ସମୟର ଉପଯୋଗ ହୋଇପାରେନାହିଁ । ରୁଚିର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସେମାନଙ୍କ କବିତା ପ୍ରତି ଜନସାଧାରଣଙ୍କର ଅନାସ୍ଥା ଜନ୍ମେ । ଆଉ ଏକ ଶ୍ରେଣୀର କବି ସୀମା ଅତିକ୍ରମ କରି ଭୁବନମୋହିନୀ କଳ୍ପନା ବଳରେ ମହା ରସମୟୀ କବିତା ରଚନା କରି ସମଗ୍ର ମନୁଷ୍ୟ ଜାତିର ହୃଦୟରେ ଉଚ୍ଚ ଆସନ ଲାଭ କରନ୍ତି । କୌଣସି ଦେଶ ବା କୌଣସି କାଳ ସେମାନଙ୍କ ସମ୍ମାନ ହ୍ରାସ କରିପାରେ ନାହିଁ-ତାହା ଉତ୍ତରୋତ୍ତର ବୃଦ୍ଧିପ୍ରାପ୍ତ ହୁଏ । ଏହି ଶ୍ରେଣୀର କବିମାନେ ପ୍ରକୃତ 'ମହାକବି' ଆଖ୍ୟାର ଯୋଗ୍ୟ । ଏମାନେ କେବଳ ସୌନ୍ଦର୍ଯ୍ୟ-ପ୍ରକାଶକ ନୁହନ୍ତି, ମାନବ ସମାଜର ଶ୍ରେଷ୍ଠ ଶିକ୍ଷାଗୁରୁ ।"

"ସାହିତ୍ୟ ସେବାର ପ୍ରଥମ ପ୍ରୟୋଜନୀୟ ବିଷୟ—ପୁସ୍ତକ ପାଠ । ଆଜିକାଲି ଏତେ ଗ୍ରାଜୁଏଟ୍ ଅଣ୍ଡର ଗ୍ରାଜୁଏଟ୍ ଓ ପଣ୍ଡିତ ବ୍ୟକ୍ତି ଥାଉଁ ଥାଉଁ ଆମ୍ଭେମାନେ ସେମାନଙ୍କୁ ପୁସ୍ତକ ପାଠ କରିବାକୁ ପରାମର୍ଶ ଦେଉଅଛୁଁ, ଏ କଥାଟା ଆପାତତଃ ଶୁଣିବାକୁ ଅଡୁଆ ଲାଗିପାରେ । କିନ୍ତୁ ଏହା ଅତି ସତକଥା ଯେ, ଉତ୍କଳୀୟ ଶିକ୍ଷିତ ଶ୍ରେଣୀ ମଧ୍ୟରେ ପୁସ୍ତକ ପାଠ ବଡ଼ କମ । ଆଉ ଯେଉଁମାନଙ୍କ ମଧ୍ୟରେ କିଛି କିଛି ଦେଖାଯାଏ, ତାହା ପ୍ରକୃତ ପଦ୍ଧତି ଅନୁସାରେ ନୁହେଁ । ସ୍କୁଲ କଲେଜରେ ଯେଉଁ ପଢ଼ା ସେ ତ 'ପାଶ ପଢ଼ା' । ସେ ପଢ଼ା ସଙ୍ଗେ ଜୀବନର ବିଶେଷକିଛି ସମ୍ବନ୍ଧ ଅଛି, ଆମ୍ଭେମାନେ ଏପରି ମନେ କରୁନାହୁଁ । ଅନେକଙ୍କ ପକ୍ଷରେ ସେହି ପଢ଼ା ବନ୍ଦ ହେବା ସଙ୍ଗେ ସଙ୍ଗେ ପୋଥିରେ ଡୋର ଦିଆଯାଏ ।"

"ଉଚ୍ଚଶ୍ରେଣୀର ପୁସ୍ତକ ପାଠ ନ କଲେ ଜୀବନ ଉଚ୍ଚ ହେବ କିପରି ? 'ସାଧୁ ସାଙ୍ଗରେ ସାଧୁତା ବଢ଼େ' ଏହା ସମସ୍ତେ ସ୍ୱୀକାର କରିବେ ।"

"ସାହିତ୍ୟ ସେବାର ଦ୍ୱିତୀୟ ଉପାଦାନ ଆଲୋଚନା । ଏହାଦ୍ୱାରା ଆମ୍ଭମାନଙ୍କର ଅପରିସ୍ଫୁଟ ଚିନ୍ତାଗୁଡ଼ିକ ସ୍ଫୁଟତର ହୁଏ । ଅନେକ ସମୟରେ ନୂତନ ଚିନ୍ତାର ଦ୍ୱାର ଫିଟିଯାଏ । କେଉଁ ଚିନ୍ତା କେଉଁ ସୂତ୍ରରେ ଜାଗ୍ରତ ହୁଏ, ତାହା ନିରୂପଣ କରିବା ସହଜ ନୁହେଁ । ପୁସ୍ତକ ପାଠରେ ହେଉ, ବା ବନ୍ଧୁମାନଙ୍କ ସାଙ୍ଗରେ ଆଲୋଚନା ଦ୍ୱାରା ହେଉ, ଯେତେବେଳେ ଗୋଟିଏ ଚିନ୍ତା ପ୍ରାଣରେ ଉଦିତ ହେବ, ତେତେବେଳେ ଯତ୍ନପୂର୍ବକ ତାହାର ଅନୁସରଣ କରିବା ଆବଶ୍ୟକ । ନଚେତ୍ ସେ ଚିନ୍ତା ସ୍ଥାୟୀ ହେବନାହିଁ ।"

"ଲେଖକର ଦାୟିତ୍ୱ ଜ୍ଞାନ ଜନ୍ମାଇଦେବା ସମାଲୋଚନାର ପ୍ରଧାନ କାର୍ଯ୍ୟ । ସମାଲୋଚନାର ନାମ ଶୁଣି ଯେ ଭୀତ ବା କ୍ରୋଧ ହୁଏ ସେ କଦାଚ ଲେଖକ ପଦର ଉପଯୁକ୍ତ ନୁହେଁ । ଓଡ଼ିଆ ସାହିତ୍ୟର ବର୍ତ୍ତମାନ ଉଷାକାଳ; କିନ୍ତୁ ସେଥିପାଇଁ ଯେ ଯାହା ଲେଖିବ ତାହା ସହି, ସେ ସମ୍ବନ୍ଧରେ କିଛି କହିବା ମହାପାପ, ଏପରି ମନେ କରିବା ବିଷମ ଭ୍ରାନ୍ତି ।"

"'ଜାତୀୟ ଜୀବନ' କ'ଣ, ଏହା ବୁଝିବା ପୂର୍ବରୁ 'ଜାତି' କଥାଟି ଉତ୍ତମ ରୂପେ ବୁଝିବା ଆବଶ୍ୟକ । ବର୍ତ୍ତମାନ ଏହି କଥାଟି ଘେନି ଏ ଦେଶରେ ବିଶେଷ ଆନ୍ଦୋଳନ ଉପସ୍ଥିତ । ପୂର୍ବେ ଆମ୍ଭମାନଙ୍କ ଦେଶରେ ପ୍ରାୟ ସକଳ ବିଭାଗରେ ଅଧିକାଂଶ କାର୍ଯ୍ୟ ବ୍ୟକ୍ତିଗତ ଭାବେ ଅନୁଷ୍ଠିତ ହେଉଥିଲା । ଶକ୍ତିଶାଳୀ ବ୍ୟକ୍ତିମାନେ ନିଜ ନିଜ ରୁଚି ଓ ଇଚ୍ଛା ଅନୁସାରେ ଶକ୍ତି ସାମର୍ଥ୍ୟ ନିୟୋଗ କରି ବଡ଼ ବଡ଼ କାର୍ଯ୍ୟମାନ ସାଧନ କରିଯାଉଥିଲେ । ଏହି ବ୍ୟକ୍ତିଗତ ଜୀବନର କାର୍ଯ୍ୟ ଅବଶ୍ୟ ଜାତୀୟ ଜୀବନରେ ସ୍ୱୀୟ ପ୍ରଭାବ ବିସ୍ତାର କରୁଥିଲା, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଏକ ଭାବରେ ଏକ ଉଦ୍ଦେଶ୍ୟରେ ସମବେତ ଭାବରେ କାର୍ଯ୍ୟ କରିବା ଆମ୍ଭମାନଙ୍କର ଦେଶରେ ନୂତନ । ପାଶ୍ଚାତ୍ୟ ସଭ୍ୟତାର ପ୍ରେରଣାରେ ଜାତୀୟ ଜୀବନ ବିଷୟରେ ଚିନ୍ତା କରିବାକୁ ଆମ୍ଭମାନଙ୍କର ପ୍ରବୃତ୍ତି ଜନ୍ମିଅଛି । ପୃଥିବୀର ସମସ୍ତ ମାନବଜାତି ସ୍ଥୁଳତଃ ଏକ । ଏକ ପ୍ରକାର ପ୍ରବୃତ୍ତି, ଭାବ ଓ ଶକ୍ତି ଘେନି ସମସ୍ତେ ଜନ୍ମିଅଛନ୍ତି । ଏଗୁଡ଼ିକର ପରିମାଣଭେଦ ଅଛି । ମାତ୍ର ପ୍ରକାରଭେଦ ନାହିଁ । ନାନା କାରଣରୁ ପୃଥିବୀର ଅନେକ ଜାତିର ସୃଷ୍ଟି ହୋଇଅଛି । ଜାତି ବିଭାଗ ଓ ଜାତି ଗଠନ ସମ୍ବନ୍ଧରେ ତିନୋଟି ପ୍ରଧାନ କାରଣ ଲକ୍ଷିତ ହୁଏ :

୧ମ—ଧର୍ମଗତ ସମ୍ବନ୍ଧ—ଏକଧର୍ମାବଲମ୍ବୀମାନେ ଏକ ଜାତି ରୂପରେ ପରିଗଣିତ ହୁଅନ୍ତି । ୨ୟ—ଶାସନଗତ ସମ୍ବନ୍ଧ—ଏକ ଶାସନାଧୀନ ଲୋକମାନେ ଏକ ଜାତୀୟ ବୋଲି ବିବେଚିତ ହୁଅନ୍ତି । ୩ୟ—ଭାଷାଗତ ସମ୍ବନ୍ଧ—ଏକ ଭାଷା ବ୍ୟବହାରୀ ଲୋକମାନେ ଏକ ଜାତୀୟ ବୋଲି ପରିଚିତ ହୁଅନ୍ତି । ଏହି ତିନିଗୋଟି ସମ୍ବନ୍ଧ ଦ୍ୱାରା ଜାତି ଗଠିତ ହେବାର ଦେଖାଯାଏ । କେଉଁ ସ୍ଥଳରେ ଏଥିମଧ୍ୟରୁ ଗୋଟିଏ, କେଉଁଠାରେ

ଦୁଇଗୋଟି, କେଉଁଠାରେ ବା ତିନିଗୋଟି ସମ୍ବନ୍ଧ ଦ୍ୱାରା ଜାତି ଗଠିତ ହୋଇଥାଏ, କିନ୍ତୁ ଏହି ତିନିଗୋଟି ସମ୍ବନ୍ଧ ଏକତ୍ର ବିଦ୍ୟମାନ ଥିଲେ ଜାତୀୟ ଜୀବନ ଦୃଢ଼ତମ ଭିତ୍ତି ଉପରେ ପ୍ରତିଷ୍ଠିତ ହୁଏ ।"

"ବର୍ତ୍ତମାନ ଏହି ଜାତୀୟ ଜୀବନ ଗଠନ ପକ୍ଷରେ ସାହିତ୍ୟ କି କାର୍ଯ୍ୟ ସାଧନ କରିପାରେ ତାହାହିଁ ସଂକ୍ଷେପରେ ବ୍ୟକ୍ତ କରିବି ।

ପ୍ରଥମ କଥା–ସାହିତ୍ୟ ଜାତୀୟ ଜୀବନର ପ୍ରଧାନ ବନ୍ଧନ ରଜ୍ଜୁ । ଜାତୀୟ ଜୀବନର ସୂତ୍ରପାତ ଅନେକ ଆଡୁ ହୋଇଥାଏ । କିନ୍ତୁ ମାତୃଭାଷା ଓ ମାତୃଭାଷାର ସାହିତ୍ୟ ଜାତୀୟ ଜୀବନର ପ୍ରଧାନ ବନ୍ଧନ । ଦ୍ୱିତୀୟ କଥା–ସାହିତ୍ୟ ଜାତୀୟ ଜୀବନର ଆଶା ଓ ଆକାଙ୍କ୍ଷାର ବର୍ହିପ୍ରକାଶ । ତୃତୀୟ କଥା–ସାହିତ୍ୟ ଜାତୀୟ ଜୀବନର ନିର୍ମାତା । ବିଶେଷ ବିଶେଷ ଶକ୍ତିଶାଳୀ ଓ ପ୍ରତିଭାବନ୍ତ ପୁରୁଷମାନଙ୍କ ହୃଦୟରେ ଯେଉଁ ଉନ୍ନତ ନବ ଭାବମାନ ଆସି ଉପସ୍ଥିତ ହୁଏ, ତାହା ଜାତୀୟ ସାହିତ୍ୟ ଦ୍ୱାରା ବିକୀର୍ଣ୍ଣ ହୋଇ ଜାତୀୟ ଜୀବନରେ ପ୍ରବେଶ ଲାଭ କରେ । ଚତୁର୍ଥ କଥା–ସାହିତ୍ୟ ଜାତୀୟ ଜୀବନର ମାନମନ୍ଦିର, ଜାତୀୟ ଜୀବନର ପରିମାପକ । ଯେବେ ଜାତୀୟ ଜୀବନର ଉନ୍ନତି–ପରିମାଣ ସ୍ଥିର କରିବାକୁ ଇଚ୍ଛା କର, ଜାତୀୟ ଜୀବନର ଗତି ନିରୂପଣ କରିବାକୁ ଇଚ୍ଛା କର, ତେବେ ଜାତୀୟ ସାହିତ୍ୟ ପ୍ରତି ଦୃଷ୍ଟିପାତ କର । ଜାତୀୟ ସାହିତ୍ୟର ପୃଷ୍ଠା ଉଦ୍‌ଘାଟନ କର । ତୁମ୍ଭ ମନରୁ ସମସ୍ତ ସନ୍ଦେହ ଦୂର ହେବ । ଦୂରବର୍ତ୍ତୀ ହୋଇ ଜାତିର ଅବସ୍ଥା ସମ୍ବନ୍ଧରେ ଧାରଣା କରିବାକୁ ହେଲେ ତାହା ଜାତୀୟ ସାହିତ୍ୟରୁ ସ୍ପଷ୍ଟ ରୂପେ ମିଳିବ ।"

"ସତ୍ୟ ଗୋପନ କରିବା, ହୀନ ଆଦର୍ଶ ପ୍ରଶ୍ରୟ ଦେବା, ବୃଥା ଅଭିମାନର ପୋଷକତା କରିବା ଆମ୍ଭମାନଙ୍କ କାର୍ଯ୍ୟକ୍ଷେତ୍ରର ସୀମାର ବର୍ହିଭୁତ । ଆମ୍ଭମାନଙ୍କ ମତରେ ତଦ୍ୱାରା ଜାତିର ଉନ୍ନତି ପରିବର୍ତ୍ତେ ଅବନ୍ନତି ଅବଶ୍ୟମ୍ଭାବୀ ।"

"ପ୍ରତିଭାର ଆଲୋକପାତ ନ ହେଲେ ସାହିତ୍ୟର ଯଥାର୍ଥ ଅଭିବୃଦ୍ଧି ଘଟେନାହିଁ । ପ୍ରତିଭା ସାହିତ୍ୟରେ ନବଶକ୍ତି ସଂଚାର କରିବା ସଙ୍ଗେ ସଙ୍ଗେ ଭାଷାକୁ ଅଭିନବ ଆକାରରେ ଗଠନ କରି ସାଧାରଣଙ୍କ ସମ୍ମୁଖରେ ନବ ଆଦର୍ଶ ସ୍ଥାପନ କରେ । ମାତ୍ର ପ୍ରତିଭା ସର୍ବତ୍ର ଓ ସର୍ବ ସମୟରେ ସୁଲଭ ନୁହେଁ ।"

"ଲଜ୍ଜା, ସମ୍ଭ୍ରମ ରକ୍ଷା ନିମିତ୍ତ ଯେପରି ବସ୍ତ୍ର ବ୍ୟବହାରର ପ୍ରୟୋଜନ, ଭାଷାର ମଧ୍ୟ ସେହିପରି ସଦ୍ ବ୍ୟବହାରର ପ୍ରୟୋଜନ । ଭାଷା ମଧ୍ୟରେ 'କୁ' 'ସୁ' ସକଳ ପ୍ରକାର ବ୍ୟବହାର୍ଯ୍ୟ ବିଷୟର ଶବ୍ଦ ଅବଶ୍ୟ ରହିବ; କିନ୍ତୁ ତାହା ବୋଲି ସକଳ ପ୍ରକାର

କଥାର ଯଥେଚ୍ଛା ବ୍ୟବହାର କି ସୁସଂଗତ ? ପୁଣି ଏକାର୍ଥବୋଧକ ଦୁଇ କିମ୍ବା ତତୋଧିକ ଶବ୍ଦ ମଧ୍ୟରେ ବ୍ୟବହାର ଗୁଣରେ ସମାଜ ମଧ୍ୟରେ କେଉଁଟି ମାର୍ଜନୀୟ କେଉଁଟି ବା ଦୂଷଣୀୟ ହୋଇଅଛି । ଏଥିପ୍ରତି ଦୃଷ୍ଟି ନ ରଖି କେବଳ ଏକାର୍ଥବୋଧକ ସ୍ଥାନରେ ଅପରଟି ବ୍ୟବହାର କରିବା ସମ୍ପୂର୍ଣ୍ଣ ଅଯୌକ୍ତିକ, ଅସାଧୁ ପ୍ରୟାସ (Vulgarity), ସର୍ବଥା ପରିହାର୍ଯ୍ୟ । ସମାଜ ମଧ୍ୟରେ ଏହି ପ୍ରକାର ଅସାଧୁ ପ୍ରୟୋଗର ବାହୁଲ୍ୟ ଘୋର ନିନ୍ଦାର କଥା । ଏଥି ଉପରେ ପୁଣି ଅସ୍ଥାନ ପ୍ରୟୋଗ ଦୋଷ ଅଛି ।"

"ଅଶ୍ଳୀଳତା ନିବାରଣ ପାଇଁ ଗବର୍ଣ୍ଣମେଣ୍ଟଙ୍କର ବ୍ୟବସ୍ଥା ଶାସ୍ତ୍ରରେ ବିଧି ଅଛି । ମାତ୍ର ସେ ବିଧି ପରିଚାଳନ କରିବ କିଏ ? ଦେଶର ସମସ୍ତ ଲୋକ ତ ଅଳ୍ପାଧିକ ପରିମାଣରେ ଏକ ଅପରାଧରେ ଅପରାଧୀ, ପୁଲିସ କର୍ମଚାରୀମାନଙ୍କ ଦ୍ୱାରା ଏହାର ଅନେକ ପ୍ରତିବିଧାନର ଆଶା କରାଯାଆନ୍ତା । ଦୁର୍ଭାଗ୍ୟର ବିଷୟ ଯେ ସେହି ପୁଲିସ୍ କର୍ମଚାରୀମାନେ ଏ ବିଷୟରେ ଅପର ସାଧାରଣଙ୍କର ଆଦର୍ଶ ଅଟନ୍ତି—କଦର୍ଯ୍ୟ ଗାଳି ଯେତେ ପ୍ରକାର ହୋଇପାରେ ସେ ସମସ୍ତ ପୁଲିସର ଗୋଟିଏ ପ୍ରଧାନ ଅସ୍ତ୍ର ମଧ୍ୟରେ ଗଣ୍ୟ । ଦେଶର ଲୋକେ ବି ପାଞ୍ଚଜଣ ଦଶଜଣ ମିଳି ଏହାର ଦମନର ଚେଷ୍ଟା କରିବେ, ସେ ଆଶା ମଧ୍ୟ ଅତି ଅଳ୍ପ । ନାନା ଅସାର ବିଷୟରେ ଶକ୍ତି ସାମର୍ଥ୍ୟ ଅପବ୍ୟୟ କରୁଅଛନ୍ତି, ଅଥଚ ପ୍ରକୃତ ଅନିଷ୍ଟ ନିବାରଣ ବା ଇଷ୍ଟ ସାଧନରେ ଏକୀଭୂତ ହୋଇ କାର୍ଯ୍ୟ କରିବାର ଦୃଷ୍ଟାନ୍ତ ଏ ଦେଶରେ ବିରଳ ।"

"ପ୍ରାଚୀନ ଓ ଆଧୁନିକ ଭାରତର ନାରୀଗଣଙ୍କ ଅବସ୍ଥା ମଧ୍ୟରେ ଆକାଶ-ପାତାଳ ପ୍ରଭେଦ । କେଉଁ ରମଣୀ ସ୍ୱାମୀ ସନ୍ନିଧାନରେ ଉପବେଶନ କରି ଗଭୀର ବ୍ରହ୍ମତତ୍ତ୍ୱ ଆଲୋଚନାରେ ଜୀବନ ସାର୍ଥକ କରିଅଛନ୍ତି, କେହି ବେଦର ସୂକ୍ତ ରଚନା କରି ଅକ୍ଷୟ କୀର୍ତ୍ତି ଲାଭ କରିଅଛନ୍ତି, କୌଣସି କୌଣସି ରମଣୀକୁଳମଣ୍ଡନା ଗଣିତ ଓ ଜ୍ୟୋତିଷ ଶାସ୍ତ୍ରର ଆଲୋଚନାରେ ଜୀବନ ଉତ୍ସର୍ଗ କରି ନାରୀ ପ୍ରତିଭାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ପ୍ରଦର୍ଶନ କରିଅଛନ୍ତି; ଅନ୍ତପୁରସ୍ଥା ରାଜମହିଷୀଗଣ ପ୍ରକାଶ୍ୟ ସଭାସ୍ଥଳରେ ଉପସ୍ଥିତ ହୋଇ ଅମାତ୍ୟ ବର୍ଗଙ୍କ ସହିତ ରାଜକାର୍ଯ୍ୟ ପରିଚାଳନା ବିଷୟରେ ମନ୍ତ୍ରଣା କରିଅଛନ୍ତି, କେତେ ରମଣୀ ଯୋଦ୍ଧୃବେଶରେ ଭୀଷଣ ରଣ କ୍ଷେତ୍ରରେ ପ୍ରବେଶ କରି ଅସାଧାରଣ ଶକ୍ତି ସାମର୍ଥ୍ୟ ଦେଖାଇ ଅଛନ୍ତି; ଅନ୍ୟକେହି ଭୀତିଶୂନ୍ୟ ହୃଦୟରେ ରଥାରୋହଣରେ ନାନା ପ୍ରଦେଶ ପରିଭ୍ରମଣ କରି ନିଜର ଜ୍ଞାନ ଲାଳସା ଓ ସୌନ୍ଦର୍ଯ୍ୟପିପାସା ଚରିତାର୍ଥ କରିଅଛନ୍ତି; ଏହିପରି ପ୍ରାଚୀନ ଭାରତରେ ନାରୀ ଜାତିର ଅଧିକାର ସକଳ ବିଭାଗରେ ଅପ୍ରତିହତ ଥିଲା । ମାତ୍ର ବର୍ତ୍ତମାନ କାଳର ରମଣୀମାନଙ୍କ ହୀନାବସ୍ଥା ଚକ୍ଷୁଷ୍ମାନ୍ ବ୍ୟକ୍ତିମାତ୍ରକେ ପ୍ରତ୍ୟକ୍ଷ କରୁଅଛନ୍ତି । ନିରକ୍ଷରା ପିଞ୍ଜରନିବଦ୍ଧା

କୁଳକାମିନୀଗଣ କିପରି ବିଷାଦରେ ଏବଂ ଯନ୍ତ୍ରଣାରେ ଦିନ କଟାଉଅଛନ୍ତି, ତାହା କାହାରି ଅଗୋଚର ନାହିଁ । ନାରୀ ଜାତିର ଧର୍ମ, ବ୍ରତ, ଉପବାସ ପର୍ଯ୍ୟନ୍ତ ଚିନ୍ତା ରନ୍ଧନଶାଳା ଓ ଶୟନଗୃହ ଅଥବା ବସନ ଭୂଷଣରେ ପର୍ଯ୍ୟବେସିତ; ଗତିବିଧି ଅନ୍ତଃପୁରର ପ୍ରାଚୀର ମଧ୍ୟରେ ନିବଦ୍ଧ । ଏପରି ଅବସ୍ଥାରେ ସମାଜର ରସାତଳଗତି ଅନିର୍ବାର୍ଯ୍ୟ ।"

"ଏ ସଂସାରରେ ଏପରି କି ବିଷୟ ଅଛି, ମନୁଷ୍ୟ ଯାହାର ଅପବ୍ୟବହାର କରେନାହିଁ ? ସେଥିପାଇଁକି ସଂସାରର ତାବତୀୟ ବସ୍ତୁ ନିନ୍ଦନୀୟ ଓ ପରିତ୍ୟଜ୍ୟ ହୋଇପାରେ ? ଧର୍ମର ନାମରେ ମନୁଷ୍ୟ କେତେ ଭୀଷଣ କାଣ୍ଡ ଅଭିନୟ କରୁଅଛି, ସେଥିପାଇଁକି ପ୍ରକୃତ ଧର୍ମ ଅବଜ୍ଞେୟ ? ଶିକ୍ଷାଲାଭ କରି ଲୋକେ ଧର୍ମ ଓ ନୀତିର ମସ୍ତକରେ ପଦାଘାତ କରି ଶିକ୍ଷାର ନାମରେ କଳଙ୍କ ଆନୟନ କରୁଅଛନ୍ତି, ତାହାବୋଲି ଶିକ୍ଷା ଏ ସମସ୍ତର ମୂଳ ଏକଥା କହିବାକି ଯୁକ୍ତିସଂଗତ ? ବର୍ତ୍ତମାନ ପ୍ରଚଳିତ ବିଦ୍ୟାଳୟର ଶିକ୍ଷା ସ୍ୱଭାବତଃ ଅସମ୍ପୂର୍ଣ୍ଣ, ତହିଁରେ ପୁଣି ସ୍ତ୍ରୀ-ଶିକ୍ଷା ଆହୁରି ଅସମ୍ପୂର୍ଣ୍ଣ । ଏପରି ଅବସ୍ଥାରେ ଦୋଷ ପ୍ରବେଶ କରିବା ଅତ୍ୟନ୍ତ ସମ୍ଭବପର । କିନ୍ତୁ ଆମ୍ଭେମାନେ ପଚାରୁଁ, ଅଧିକାଂଶ ସ୍ଥଳରେ ପୁରୁଷମାନଙ୍କ ଅବିବେଚକତା ଓ ଔଦାସୀନ୍ୟ କି ଏଥିର କାରଣ ନୁହେଁ ? ସେ ଯାହାହେଉ, ଶିକ୍ଷିତା ରମଣୀ ମାତ୍ରକେ ଯେ ନିନ୍ଦନୀୟା ଏକଥା କଦାଚ ବୋଲାଯାଇ ନ ପାରେ । ପକ୍ଷାନ୍ତରେ ଶିକ୍ଷାବିହୀନା ନାରୀଗଣ କି ସମସ୍ତେ ଗଙ୍ଗାଜଳ ପରି ସ୍ୱଚ୍ଛ ଓ ପବିତ୍ର ?"

"ସକଳ ଉନ୍ନତିର ଶ୍ରେଷ୍ଠ ଉନ୍ନତି ଚରିତ୍ରର ଉନ୍ନତି—ସକଳ ସୌନ୍ଦର୍ଯ୍ୟର ଶ୍ରେଷ୍ଠ ସୌନ୍ଦର୍ଯ୍ୟ ଚରିତ୍ରର ସୌନ୍ଦର୍ଯ୍ୟ, 'ଚରିତ୍ର ହିଁ ପ୍ରକୃତ ଜୀବନ' । ସର୍ବ ପ୍ରକାରର ସୁଖ ସମୃଦ୍ଧି ଓ ବିଦ୍ୟାଲାଭ କରି ସୁଦ୍ଧା ଏକ ଚରିତ୍ର ଅଭାବରେ ମନୁଷ୍ୟର ଜୀବନ ଅସାର । ଚରିତ୍ରର ଉତ୍କର୍ଷ ସାଧନ ପକ୍ଷରେ ସହାୟ ଉଚ୍ଚ ଆଦର୍ଶ । ଉଚ୍ଚ ଆଦର୍ଶ ସମ୍ମୁଖରେ ରଖି ସର୍ବଦା ଚରିତ୍ର ଗଠନ କରିବାକୁ ଯତ୍ନବାନ ନ ହେଲେ ପ୍ରକୃତ ପକ୍ଷେ ଚରିତ୍ରର ଉନ୍ନତି ହୁଏନାହିଁ । ରମଣୀଗଣ ବାହ୍ୟ ସୌନ୍ଦର୍ଯ୍ୟର ବଡ଼ ପକ୍ଷପାତି । ସୁରୁଚି ସମ୍ଭୂତ ବେଶଭୂଷା ନିନ୍ଦନୀୟ ନୁହେଁ; କିନ୍ତୁ ଏହାଦ୍ୱାରା ଯେବେ ଶ୍ରେଷ୍ଠ ସୌନ୍ଦର୍ଯ୍ୟ ଯେ ହୃଦୟର ସୌନ୍ଦର୍ଯ୍ୟ ତତ୍‌ପ୍ରତି ଶ୍ରଦ୍ଧା ଓ ଆଦର କମିଯାଏ, ତେବେ ଏହା ଘୋର ଅନିଷ୍ଟର କାରଣ ହୋଇପଡ଼େ । ଏଣୁ ରମଣୀମାନଙ୍କୁ ପୃଥିବୀର ଅନୁକରଣୀୟଚରିତ୍ରା ନାରୀମାନଙ୍କର ଓ ସାଧୁ-ମହାତ୍ମାମାନଙ୍କର ଜୀବନଚରିତ ପାଠ କରିବାକୁ ଦେବା ଏବଂ ସର୍ବଦା ମାନସିକ ସୌନ୍ଦର୍ଯ୍ୟର ପ୍ରଶଂସା କରିବା ଦ୍ୱାରା ସେମାନଙ୍କ ଚିତ୍ତକୁ ସେଆଡ଼କୁ ଆକର୍ଷଣ କରିବାକୁ ଚେଷ୍ଟା କରିବା ଉଚିତ । ଅତ୍ୟନ୍ତ ପରିତାପର ବିଷୟ ଯେ, ଏ ଦେଶର ପୁରୁଷଗଣ ସ୍ତ୍ରୀମାନଙ୍କୁ ବିଳାସତରଙ୍ଗରେ ଭାସମାନ ଦେଖିବାକୁ ଯେପରି ଆଗ୍ରହ ପ୍ରକାଶ କରନ୍ତି,

ସେମାନଙ୍କର ହୃଦୟ ମନର ଉନ୍ନତିରେ ତାହାର ଶତାଂଶର ଏକାଂଶ ମାତ୍ର ଯତ୍ନ ଦେଖାଯାଏ ନାହିଁ । ମନୁଷ୍ୟ ବୃଥା କୋଳାହଳରେ ମତ୍ତ ନ ହୋଇ ଯେବେ ନିଜର ଓ ବିଧାତାଙ୍କ ନିର୍ଦ୍ଦେଶ ଅନୁସାରେ ଯେଉଁମାନଙ୍କ ସହିତ ସେ ଘନିଷ୍ଠ ଭାବରେ ସମ୍ବନ୍ଧ, ସେମାନଙ୍କ ଉନ୍ନତି କାମନାରେ ନିରନ୍ତର ନିଯୁକ୍ତ ରହନ୍ତା, ତାହାହେଲେ ପ୍ରକୃତ ପକ୍ଷେ ସମାଜର ପ୍ରଭୂତ ମଙ୍ଗଳ ସାଧିତ ହୁଅନ୍ତା । ଦେଶହିତୈଷୀ 'ଦେଶର ଅଭାବ, ଦେଶର ଅଭାବ' ବୋଲି ଆକାଶ କମ୍ପାଉଛନ୍ତି, ଅଥଚ ନିଜ ଗୃହର ଅଭାବ ସେମାନଙ୍କ ଚକ୍ଷୁରେ ପଡ଼େନାହିଁ । ଦେଶର ଅଭାବ ବ୍ୟକ୍ତିଗତ ଅଭାବର ସମଷ୍ଟି ମାତ୍ର । ତାହା ପୂର୍ଣ୍ଣ ହେଲେ ଦେଶର ଅଭାବ ପୂର୍ଣ୍ଣ ହେବ ।"

"ଅନ୍ୟ ବିଷୟରେ ଯାହାହେଉ, କଳ୍ପନାର ବିଳାସ ଅନ୍ୟ ଦେଶ ଅପେକ୍ଷା ଭାରତବର୍ଷରେ ଅଧିକ, ଏ କଥାଟା ବୋଧହୁଏ ଅସନ୍ଦିଗ୍ଧ ଚିତ୍ତରେ ବୋଲାଯାଇପାରେ । ଭାରତର କଳେବର ନାନା ଅଳଙ୍କାରରେ ମଣ୍ଡିତ, ଭାରତରମଣୀ ନଖ ଠାରୁ କେଶ ପର୍ଯ୍ୟନ୍ତ ଅବୟବକୁ ବିବିଧ ଭୂଷଣରେ ସୁସଜ୍ଜିତ କରିବାକୁ ବଡ଼ ତତ୍ପର, ଉଦରାନ୍ନର ପରିମାଣ ଊଣା କରି ଏ ଦେଶର ସ୍ତ୍ରୀମାନେ ଖଣ୍ଡକେତେ ଗହଣା ସଂଗ୍ରହ କରିବାକୁ ବିନ୍ଦୁମାତ୍ର ସଙ୍କୁଚିତ ନୁହନ୍ତି । କେବଳ ସ୍ତ୍ରୀ-ଜାତି କାହିଁକି ? ଅନେକ ପୁରୁଷ ମଧ୍ୟ ନାନା ପ୍ରକାର ଅଳଙ୍କାର ପିନ୍ଧିବାର ଲୋଭ ଛାଡ଼ିପାରନ୍ତି ନାହିଁ । ଏତେ ଅଳଙ୍କାରପ୍ରିୟତା ଯେଉଁ ଦେଶରେ, ସେ ଦେଶର ଭାଷା କି ଅଳଙ୍କାରଶୂନ୍ୟ ହୋଇପାରେ ? ପ୍ରାଚୀନ ଭାରତର ଭାଷାକୁ ଅଳଙ୍କାରମୟ କହିଲେ ବୋଧହୁଏ ଅତ୍ୟୁକ୍ତି ହେବନାହିଁ । ଏକ୍ଷଣେ ଊନବିଂଶ ଶତାବ୍ଦୀର ସଭ୍ୟତା ପ୍ରଭାବରେ ଅଳଙ୍କାରର ଆଦର ଦିନକୁ ଦିନ କମିଯାଉଅଛି । ଆଜିକାଲି ଯେ ଯେତେ ଅଳ୍ପ ଅଳଙ୍କାର ବ୍ୟବହାର କରେ, ତାହାର ରୁଚି ତେତେ ଉନ୍ନତ ଓ ମାର୍ଜିତ ବୋଲି ଜଣାଯାଏ, କିନ୍ତୁ ଅଳଙ୍କାରର ସମ୍ପୂର୍ଣ୍ଣ ତିରୋଭାବ ଅସମ୍ଭବ ବୋଲି ମନେହୁଏ । ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଆମେରିକା ପ୍ରଭୃତି ଦେଶମାନେ ବର୍ତ୍ତମାନ ସଭ୍ୟତାର ଉଚ୍ଚତର ସୋପାନରେ ଅଧିରୂଢ଼ । କିନ୍ତୁ ସେ ଦେଶର ରମଣୀରତ୍ନଗଣ କି ରତ୍ନଭୂଷଣର ପ୍ରଲୋଭନକୁ ଜୟ କରିପାରିଅଛନ୍ତି ? ମାର୍ଜିତ ରୁଚିର ଅନୁମୋଦିତ ଦୁଇ ଏକ ଖଣ୍ଡ ବହୁମୂଲ୍ୟ ଅଳଙ୍କାର ଦ୍ୱାରା (ଅତି କମରେ ବୋତାମ ପ୍ରଭୃତି ଆକାରରେ ହେଲେ) ନିଜ ନିଜ ଶରୀର ମଣ୍ଡିତ କରି ସୌନ୍ଦର୍ଯ୍ୟ ବଢ଼ାଇବାକୁ ଚେଷ୍ଟା କରୁଅଛନ୍ତି । ଭାଷାରେ ମଧ୍ୟ ପୂର୍ବପରି ଅଳଙ୍କାରର ଆଡ଼ମ୍ବର ନାହିଁ; କିନ୍ତୁ କେତେଗୁଡ଼ିଏ ଅଳଙ୍କାର ଅଛି, ତାହା ଏଡ଼େ ମଧୁର—ଏଡ଼େ ପ୍ରୀତିକର ଯେ, ତାହାର ଆଦର କମିବା ଦୂରେଥାଉ, ବରଂ ଦିନକୁ ଦିନ ବଢୁଅଛି ।"

"'ମହାଜନୋ ଯେନ ଗତଃ ସ ପନ୍ଥାଃ' ଏହି ବାକ୍ୟଟି ଆମ୍ଭମାନଙ୍କ ଦେଶରେ ପ୍ରାୟ ସମସ୍ତଙ୍କ ମୁଖରୁ ଶୁଣାଯାଏ । ଅଥଚ କଥାଟାର ଏପରି ଅପବ୍ୟବହାର ହୋଇଅଛି ଯେ, ଭାବିଲେ ଦୁଃଖ ଜାତ ହୁଏ । ନାନା ପ୍ରକାର ଅସଙ୍ଗତି ବିଷୟରେ 'ମହାଜନୋ ଯେନ ଗତଃ ସ ପନ୍ଥାଃ' । ପ୍ରକୃତପକ୍ଷେ ସେ ପନ୍ଥା ସଙ୍ଗେ କାହାରି କିଛି ସମ୍ପର୍କ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଏହାର ପ୍ରକୃତ ଅର୍ଥ ଏହି ଯେ, ମହାଜନମାନେ ଆତ୍ମଜୀବନରେ ଯେଉଁ ଉଚ୍ଚ ଆଦର୍ଶ ଦେଖାଇଯାଇ ଅଛନ୍ତି, ଯେ ପ୍ରକାର ପ୍ରଣାଳୀରେ ସେମାନେ ମହତ୍ୱ ଲାଭ କରିବାକୁ ସମର୍ଥ ହୋଇଅଛନ୍ତି, ଆମ୍ଭେମାନେ ସେହି ପ୍ରଣାଳୀ ଓ ସେହି ଆଦର୍ଶ ଅନୁସରଣ କରି ଉନ୍ନତି ପଥରେ ଅଗ୍ରସର ହେବୁଁ, କେବଳ ସେମାନଙ୍କ ଉକ୍ତିଗୁଡ଼ିକ କଣ୍ଠସ୍ଥ କରି ପଣ୍ଡିତ ନାମ ଧାରଣ କଲେ ଜୀବନ ସାର୍ଥକ ହେବ ବୋଲି ମନେ କରିବା ବିଷମ ଭ୍ରାନ୍ତି !"

"ଯେଉଁଠାରେ ବିବେକର ସ୍ୱାଧୀନତା ସେହିଠାରେ ତେଜସ୍ୱିତା, ସେଇଠାରେ ମନୁଷ୍ୟତ୍ୱ । ଏହା ଭିନ୍ନ ଯେ ସ୍ୱାଧୀନତା ସେ କେବଳ ନାମମାତ୍ର । ଯେଉଁମାନେ ଧନ ମାନର ଦାସ, ରିପୁର ଦାସ, ଭ୍ରାନ୍ତ ଦେଶାଚାର କୁଳାଚାରର ଦାସ, ଅସତ୍ୟ ଓ କୁସଂସ୍କାରର ଦାସ ସେମାନଙ୍କ ମୁଖରେ ସ୍ୱାଧୀନତା ରୂପ ସ୍ୱର୍ଗୀୟ କଥା ଶୋଭା ପାଏନାହିଁ ।"

"ଭାରତବାସୀ କୌଣସି ପ୍ରକାର ସ୍ୱାଧୀନତାର ଯଥାର୍ଥ ଯୋଗ୍ୟ ହୋଇଅଛନ୍ତି କି ନାହିଁ, ବିଶେଷ ଅନୁଧାବନର ବିଷୟ । ଏହି ଯୋଗ୍ୟତାର ପ୍ରଧାନ ଲକ୍ଷଣ ଆତ୍ମସମ୍ମାନବୋଧ । ଆତ୍ମାଭିମାନୀ ଲୋକ ଏ ସଂସାରରେ ଅନେକ ଦେଖାଯାଆନ୍ତି । କିନ୍ତୁ ଆତ୍ମମର୍ଯ୍ୟାଦା ସମ୍ପନ୍ନ ବ୍ୟକ୍ତି ଅତି ଅଳ୍ପ । ବୃଥା ଅଂହକାରରେ ଉନ୍ମତ୍ତ ହୋଇ ଅନେକେ ବକ୍ଷସ୍ଫିତ କରି ବିଚରଣ କରିପାରନ୍ତି; କିନ୍ତୁ 'ମୁଁ ଏ ପ୍ରକାର ଚରିତ୍ର ଲାଭ କରିବି—ଏପରି ଭାବେ ଜୀବନ ପରିଚାଳନା କରିବି ଯେ, ତହିଁରେ କେହି ଦୋଷ ଦେଖାଇପାରିବ ନାହିଁ—ନିଜ ଜୀବନର ଦୋଷ ଦୁର୍ବଳତା ପ୍ରତି ଏ ପ୍ରକାର ତୀକ୍ଷ୍ଣ ଦୃଷ୍ଟି ରଖିଥିବି ଯେ, ଅପର ବ୍ୟକ୍ତିର ଉପଦେଶ ଦେବାର ଅବସର ସୁଦ୍ଧା ନଥିବ' ଏପରି ସାଧୁ ଆକାଙ୍କ୍ଷା କେତେଜଣଙ୍କର ଥାଏ ? ଯାହାର ଥାଏ, ସେ ହିଁ ମନୁଷ୍ୟ । ଅନ୍ୟଥା ସେ ମନୁଷ୍ୟ ଦେହଧାରୀ ପଶୁ ବିଶେଷ ।"

"ମହାସ୍ରୋତର କାର୍ଯ୍ୟପ୍ରଣାଳୀକୁ ଆମ୍ଭେମାନେ 'ନବୀକରଣ' ଆଖ୍ୟା ପ୍ରଦାନ କରିଥାଉ । ଏ 'ନବୀକରଣ'ର ଶେଷ ନାହିଁ । କେବଳ ଯେତେବେଳେ ମନୁଷ୍ୟ ସମାଜ ଦୁର୍ବୁଦ୍ଧି ତ୍ୟାଗ କରି ନତମସ୍ତକରେ ଏହାର ପ୍ରଦତ୍ତ ଦ୍ରବ୍ୟ ଗ୍ରହଣ କରିବ, ଏହାର ଆଦେଶ ବିନା ବାକ୍ୟବ୍ୟୟରେ ପାଳନ କରିବ, ତେତେବେଳେ ଘୋର ଭୟଙ୍କର ରାଷ୍ଟ୍ର ବିପ୍ଳବ, ସମାଜ ବିପ୍ଳବ, ଧର୍ମ ବିପ୍ଳବ ପ୍ରଭୃତି ଲୋକହର୍ଷଣକାରୀ

ବ୍ୟାପାରମାନ ଆଉ ମାନବ ପ୍ରାଣକୁ ଆତଙ୍କରେ ଅସ୍ଥିର କରିବ ନାହିଁ । ତେତେବେଳେ ସମସ୍ତେ ସମସ୍ୱରରେ ଏହାର ଆଦେଶକୁ ପ୍ରାଣର ଅମୃତମୟ କର୍ତ୍ତବ୍ୟ ମଣି ମହାସମାଦରରେ ସାଧନ କରିବେ ।"

"ପ୍ରେମ ମାନବ ଜୀବନର ସାରବସ୍ତୁ-ପ୍ରେମ ହିଁ ମାନବ ଜୀବନର ଲକ୍ଷ୍ୟ, ଅଥବା ପ୍ରକୃତ ଜୀବନ । ଯେଉଁଠାରେ ପ୍ରେମ, ସେହିଠାରେ ଜ୍ଞାନ ଓ ପବିତ୍ରତା, ସେହିଠାରେ ବାଧ୍ୟତା ଓ କର୍ତ୍ତବ୍ୟନିଷ୍ଠା । ପ୍ରେମ ମାନବ ହୃଦୟକୁ ଭେଦାଭେଦ ଶୂନ୍ୟ କରେ, ସ୍ୱାର୍ଥ ବିବର୍ଜିତ କରେ, ଆତ୍ମବିସ୍ମୃତ କରେ । ପ୍ରେମରେ ଛୋଟ ବଡ଼ ନାହିଁ, 'ମୁଁ' 'ତୁ' ନାହିଁ । ପ୍ରେମ ବିନା ପ୍ରକୃତ ମନୁଷ୍ୟତ୍ୱ ଅସମ୍ଭବ—ପ୍ରେମ ଶୂନ୍ୟ ହୃଦୟ ପ୍ରେତ ପିଶାଚର ଲୀଳା ଭୂମି । ଯାହା ଇନ୍ଦ୍ରିୟାସକ୍ତି ଜଡ଼ିତ ବା ସୁଖ ଲାଳସା ପ୍ରସୂତ ତାହା ପ୍ରେମ ନାମର ଯୋଗ୍ୟ ନୁହେଁ—ତାହା ଅସ୍ଥାୟୀ । ସୁଖର ଆଶା ଶେଷ ହେଲେ ତାହାର ଅସ୍ତିତ୍ୱ ପ୍ରାୟ ବିଲୁପ୍ତ ହୁଏ—ସେ କେବଳ ସୁଖର ସ୍ଥାନ ଖୋଜିବୁଲେ । ଯେଉଁ ପ୍ରେମ ମନୁଷ୍ୟ ହୃଦୟରେ ଦେବଭାବ ବିକଶିତ କରେ, ତାହାକୁ ଅନନ୍ତ ଲକ୍ଷ୍ୟପଥରେ ଅଗ୍ରସର କରେ, ତାହାହିଁ ପ୍ରକୃତ ପ୍ରେମ ।"

"ସୁଖ ଯେଉଁମାନଙ୍କର ଜୀବନର ଲକ୍ଷ୍ୟ, ସ୍ୱାର୍ଥ ଯେଉଁମାନଙ୍କର ପଥ ପ୍ରଦର୍ଶକ, ତୁଳାଦଣ୍ଡରେ ଯେଉଁମାନେ କର୍ତ୍ତବ୍ୟାକର୍ତ୍ତବ୍ୟ ନିରୂପଣ କରନ୍ତି ଏବଂ ଜନହିତକର କାମ କରନ୍ତି, ସେମାନଙ୍କ ମୁଖରେ ଧର୍ମ ନୀତିର ଉପଦେଶ ଏକ ପ୍ରକାର 'ତୁଳାଭିଣା ସଂସ୍କୃତ' ପରି ।"

"କେବଳ ପଶୁତୁଲ୍ୟ ଆହାର ବିହାର କରି ଜୀବନ କଟାଇବାକୁ ମନୁଷ୍ୟ ଏ ସଂସାରକୁ ଆସିନାହିଁ । ଏ ଜୀବନ କ୍ରୀଡ଼ା ସାମଗ୍ରୀ ନୁହେଁ ଯେ, ମନୁଷ୍ୟ ଏହାକୁ ଯେପରି ଇଚ୍ଛା ସେପରି ବ୍ୟବହାର କରି ନିଶ୍ଚିନ୍ତ ହେବ । ଜୀବନର ବ୍ୟାପାର ମହତ୍ ବ୍ୟାପାର, ଚିନ୍ତାଶୂନ୍ୟ ସ୍ଥୂଳ ବୁଦ୍ଧି ମନୁଷ୍ୟ ନିକଟରେ କେତେବେଳେ ଏହା 'ଛାୟା' କେତେବେଳେ ଏହା 'ମାୟା' । କିନ୍ତୁ ଚିନ୍ତାଶୀଳ ଜ୍ଞାନୀ ଏହାକୁ 'ଅମୂଲ୍ୟ' 'ମହତ୍ ଉଦ୍ଦେଶ୍ୟପୂର୍ଣ୍ଣ', ରୂପେ ପ୍ରତ୍ୟକ୍ଷ କରନ୍ତି ।"

"ମନୁଷ୍ୟ ଜୀବନ ଉପରେ ପୁରାତନର ଏକପ୍ରକାର ପ୍ରଭାବ ଅଛି । ଅନେକ ଦିନ ପର୍ଯ୍ୟନ୍ତ ସେ ଶକ୍ତିର କାର୍ଯ୍ୟ ଚଳିଲେ ପୁରାତନ ପ୍ରତି ଏକ ମୋହ ଜନ୍ମେ—ସେ ମୋହ ସହଜରେ ଛାଡ଼ିହୁଏନାହିଁ ଏବଂ ତାହାହିଁ ରକ୍ଷଣଶୀଳତାର ମୂଳକାରଣ । ରକ୍ଷଣଶୀଳତା ନିତାନ୍ତ ଅବଜ୍ଞାର ବସ୍ତୁ ନୁହେଁ; ତାହାଦ୍ୱାରା ଅନେକ ପୁରାତନ ରତ୍ନର ଉଦ୍ଧାର ହୁଏ । କିନ୍ତୁ ପ୍ରତ୍ୟେକ ବିଷୟର ଗୋଟିଏ ଲେଖାଏଁ ସୀମା ଅଛି—ସେ ସୀମା

ଲଂଘନ କଲେ ବିପରୀତ ଫଳ ଉତ୍ପନ୍ନ ହୁଏ । ରକ୍ଷଣଶୀଳତା ଯେବେ ବର୍ତ୍ତମାନ ଏବଂ ଭବିଷ୍ୟତ ପ୍ରତି ଅନ୍ଧ ହୁଏ, ତେବେ ଏହା ସମାଜର ଶତ୍ରୁ । ଆମ୍ଭେମାନେ ଏହି ଅନ୍ଧ ରକ୍ଷଣଶୀଳତାକୁ ଘୃଣା କରୁ—ଆମ୍ଭମାନଙ୍କ ଦେଶର ରକ୍ଷଣଶୀଳତା ଏହି ଶ୍ରେଣୀର । ଶିକ୍ଷିତ ସମ୍ପ୍ରଦାୟ ମଧ୍ୟରେ ମୌଖିକ ରକ୍ଷଣଶୀଳତା ଦେଖାଯାଉଥିଲେ ହେଁ ଜୀବନ ସଙ୍ଗେ ଏହାର ସମ୍ପର୍କ କିଛି ନାହିଁ । ଦେଖାଯାଏ, ବର୍ତ୍ତମାନ ଅନେକ ପ୍ରଚଳିତ କୁସଂସ୍କାର ଓ ରୀତିନୀତିର ବୈଜ୍ଞାନିକ ବ୍ୟାଖ୍ୟା କରିବାରେ ନିପୁଣ—'ଆର୍ଯ୍ୟଧର୍ମ', 'ସନାତନ ଧର୍ମ', 'ସ୍ୱଧର୍ମ', 'କୁଳଧର୍ମ', 'ରକ୍ତର ବିଶୁଦ୍ଧତା', 'ଶ୍ରମ ବିଭାଗ' ପ୍ରଭୃତି ବଡ଼ ବଡ଼ ବାକ୍ୟ ଉଚ୍ଚାରଣ କରିବାରେ ଖୁବ୍ ବାହାଦୁର; କିନ୍ତୁ କାର୍ଯ୍ୟତଃ ସର୍ବପ୍ରକାର ରୀତିନୀତିର ମସ୍ତକରେ ପଦାର୍ପଣ କରିବାକୁ ତତୋଧିକ ମଜ୍‌ବୁତ୍ । ସର୍ବପ୍ରକାର ଧର୍ମ ସଙ୍ଗେ ଯେଉଁମାନେ ସମ୍ପର୍କ ବିବର୍ଜିତ ସେଇମାନଙ୍କ ମୁହଁରେ ଆର୍ଯ୍ୟତ୍ୱ 'ସନାତନ ଧର୍ମ' ଇତ୍ୟାଦି ଉଚ୍ଚାଡ଼ମ୍ବରପୂର୍ଣ୍ଣ କଥାର କାରବାର ବେଶି । ରକ୍ଷଣଶୀଳତାର ପ୍ରକୃତ କାର୍ଯ୍ୟ ଯେ ପ୍ରାଚୀନ ରତ୍ନୋଦ୍ଧାର, ତା' ସଙ୍ଗେ କୌଣସି ଇଲକା ନାହିଁ । ଲୋକେ ନ ବୁଝି ନ ସୁଝି କେବଳ କଥାରେ, ନାମରେ ବିମୋହିତ—ମର୍ମ ପ୍ରଚାର ହତବୁଦ୍ଧି !"

"ପ୍ରତ୍ୟେକ ଜାତିର ପ୍ରାଚୀନ ଇତିହାସ କେବଳ କେତେଗୁଡ଼ିଏ କ୍ଷମତାଶାଳୀ ବୀରପୁରୁଷଙ୍କର କଳ୍ପନା ନିସୃତ ବିବରଣ ଛଡ଼ା ଆଉ କିଛି ନୁହେଁ । ସେହି ବୀର ମାନେ ଦେବତା ବା ଦେବଅଂଶରେ ଜାତ ଏବଂ ସେମାନଙ୍କର କାର୍ଯ୍ୟକଳାପ ଅଲୌକିକ । ତେବେ ଏହା ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ, ଆମ୍ଭମାନଙ୍କ ଦେଶରେ କଳ୍ପନାର ମାତ୍ରା ଅତ୍ୟନ୍ତ ଅଧିକ । ସେହି କଳ୍ପନାରାଶି ଭେଦକରି ପ୍ରକୃତ ତଥ୍ୟ ଲାଭ କରିବା ସାଧାରଣ ମନୁଷ୍ୟର କାର୍ଯ୍ୟ ନୁହେଁ । ହିନ୍ଦୁ ଜାତି ଚିରକାଳ କଳ୍ପନାପ୍ରିୟତା ନିମିତ୍ତ ଖ୍ୟାତ । ସକଳ ବିଷୟରେ ଏମାନେ କଳ୍ପନାର ଚରମ ସୀମାରେ ଉପସ୍ଥିତ ନହୋଇ ଛାଡ଼ି ନାହାନ୍ତି । ଆମ୍ଭମାନଙ୍କ ଦେଶରେ ପ୍ରାଚୀନ ଚିକିତ୍ସା ଶାସ୍ତ୍ରରେ ଯେପରି ରସିକତା, ଭାବୁକତା, ଅଳଙ୍କାର ଓ ଆଡ଼ମ୍ବରର ସମାବେଶ ଦେଖାଯାଏ, ଅନ୍ୟ ଦେଶର କାବ୍ୟ ନାଟକାଦିରେ ମଧ୍ୟ ତାହା ଦେଖାଯାଏ ନାହିଁ । ସେ ଯାହାହେଉ, ପ୍ରାଚୀନ କାଳରେ ଏହି ପ୍ରକାର କଳ୍ପନା ମିଶ୍ରିତ ବିବରଣ ଛଡ଼ା ଆମ୍ଭେମାନେ ବିଶୁଦ୍ଧ ଇତିହାସ ବୋଲି କୌଣସି ବସ୍ତୁ ପାଇପାରୁନାହିଁ । କେଉଁଠାରେ ବା ଏହି ବିବରଣମାନ ଇତିହାସ ଆଖ୍ୟା ପ୍ରାପ୍ତି ହୋଇଅଛି, କେଉଁଠାରେ କାବ୍ୟ, ନାଟକ, ପୁରାଣ ଇତ୍ୟାଦି ଆକାର ଧାରଣ କରି ରହିଅଛି । ପ୍ରକୃତ ପକ୍ଷେ ପ୍ରାଚୀନ କାଳର ଇତିହାସ ଭିନ୍ନ ଭିନ୍ନ ଯୁଗର ସାହିତ୍ୟ ମଧ୍ୟରେ ଅନ୍ତର୍ନିବିଷ୍ଟ ରହିଅଛି । ପ୍ରାଚୀନ ଧର୍ମଶାସ୍ତ୍ର ପର୍ଯ୍ୟନ୍ତ ଐତିହାସିକ ସତ୍ୟରେ ପରିପୂର୍ଣ୍ଣ । ପୁରାତନ ବାଇବେଲ ଏବଂ ଆମ୍ଭମାନଙ୍କର ବେଦ ତାହାର

ଉଜ୍ଜ୍ୱଳ ପ୍ରମାଣ ସ୍ୱରୂପ । କେବଳ ତାହାନୁହେଁ, ଭିନ୍ନ ଦେଶର ଓ ଭିନ୍ନକାଳର ମନ୍ଦିର, ଗୃହ, ଖୋଦିତ ମୂର୍ତ୍ତି ଓ ଫଳକାଦିରେ ସେହି ସେହି ଦେଶର ଓ କାଳର ଇତିହାସ ଉଜ୍ଜ୍ୱଳ ଅକ୍ଷରରେ ଲିଖିତ ହୋଇଅଛି । ସୂକ୍ଷ୍ମଦୃଷ୍ଟି ସମ୍ପନ୍ନ ପଣ୍ଡିତମାନେ ମନିଷା ବଳରେ ଏହିପରି ସାହିତ୍ୟର ନାନା ବିଭାଗରୁ ଏବଂ ପ୍ରାଚୀନ କୀର୍ତ୍ତି ଖୋଦିତ ମୂର୍ତ୍ତି ଓ ଫଳକାଦିରୁ ଐତିହାସିକ ତଥ୍ୟ ସଂଗ୍ରହ କରି ପ୍ରାଚୀନ ଇତିହାସ ନାମକ ଗୋଟିଏ ଉପାଦେୟ ବସ୍ତୁ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଅଛନ୍ତି । କିନ୍ତୁ ସେହି ସଂଗୃହୀତ ଅଂଶମାତ୍ର ପ୍ରକୃତ ଇତିହାସ ନୁହେଁ ବା ବିଶେଷ ମତ ସ୍ଥାପନ କିମ୍ୱା କାଳାଦି ନିର୍ଣ୍ଣୟାର୍ଥେ ପ୍ରତ୍ନତତ୍ତ୍ୱବିତ୍ ପଣ୍ଡିତମାନଙ୍କ ମଧ୍ୟରେ ଯେ ତୁମୁଳ ସଂଗ୍ରାମ ସମୟ ସମୟରେ ଉପସ୍ଥିତ ହୁଏ ଏବଂ ତାହାର ଫଳ ସ୍ୱରୂପ ଯେ ପ୍ରକାଣ୍ଡ ପୁସ୍ତକମାନ ରଚିତ ହୁଏ, ସେ ସମସ୍ତ ମଧ୍ୟ ପ୍ରକୃତ ଇତିହାସ ନୁହେଁ । ପ୍ରକୃତ ଇତିହାସ ସେ ସମସ୍ତର ପଶ୍ଚାଦେଶରେ । ଚିନ୍ତାଶୀଳ ପାଠକମାନେ ତାହା ପାଠ କରିବାକୁ ସମର୍ଥ ହୁଅନ୍ତି ।"

"ନର୍ମାଲ ସ୍କୁଲ ଦେଶୀୟ ଭାଷାର କଲେଜ । ଏଥି ଉପରେ ଏହାର ବିଶେଷତ୍ୱ ଏହି ଯେ, ଏହାର ଛାତ୍ରବୃନ୍ଦ କେବଳ ଅଧ୍ୟାପନା କାର୍ଯ୍ୟ ନିମିତ୍ତ ପ୍ରସ୍ତୁତ ହେବେ । ଅଧ୍ୟାପନା କାର୍ଯ୍ୟ ତୁଲ୍ୟ ଗୁରୁତର ଦାୟିତ୍ୱ ଏ ସଂସାରରେ ଆଉ କ'ଣ ଅଛି, ଆମ୍ଭମାନଙ୍କୁ ଜଣାନାହିଁ । କିନ୍ତୁ ଆମ୍ଭମାନଙ୍କ ଶସ୍ତାଖିଆ ଗବର୍ଣ୍ଣମେଣ୍ଟ ଏହି କାର୍ଯ୍ୟଟା ସବୁଠାରୁ ଅଧିକ ଶସ୍ତା ଦରରେ କରାଇବାକୁ ବ୍ୟସ୍ତ । ଯାବତ୍ ଦୃଷ୍ଟି ଶିକ୍ଷା ବିଭାଗ ଉପରେ । ଆମ୍ଭେମାନେ ଜାଣୁ ସମସ୍ତ ସଭ୍ୟ ଦେଶଠାରୁ ଭାରତ ଗବର୍ଣ୍ଣମେଣ୍ଟଙ୍କ ଶିକ୍ଷା ବ୍ୟୟ ଅନେକ ପରିମାଣରେ ନ୍ୟୂନ । ଆୟ ସହିତ ତୁଳନା କଲେ ଏହା କିଛି ନୁହଁ । ସେ ଯାହାହେଉ, ଗବର୍ଣ୍ଣମେଣ୍ଟ ଶସ୍ତା ଦରରେ ପଣ ପଣ ଶିକ୍ଷକ ବର୍ଷକୁ ବର୍ଷ ଗଢ଼ି ନେବାକୁ ଚାହାନ୍ତି । ନର୍ମାଲ ସ୍କୁଲ ସେହିପରି ଗୋଟିଏ କାରଖାନା । ସମସ୍ତେ ଜାଣନ୍ତି ସେହି କାରଖାନା ଘରେ ମାଲ ମସଲା, ମିସ୍ତିରୀ, ଅସ୍ତ୍ରଶସ୍ତ୍ର ସର୍ବଦା ମହଜୁଦ୍ । କିନ୍ତୁ ଆମ୍ଭମାନଙ୍କ ଜିଜ୍ଞାସା ଏହି । ମିସ୍ତିରୀମାନେ କିପରି କାର୍ଯ୍ୟ କରୁଅଛନ୍ତି, କିପରି ଜିନିଷ ଗଢ଼ୁଅଛନ୍ତି ଆଉ ମାଲ ମସଲା ଠିକ୍ ଅଛି କି ନା, ଏ ସମସ୍ତ ଯାହାଙ୍କର ଦେଖିବା ଉଚିତ୍ ସେ ତାହା ଭଲକରି ଦେଖୁଅଛନ୍ତି ତ ? ଆମ୍ଭେମାନେ ଦେଖୁଅଛୁଁ ବର୍ଷକୁ ବର୍ଷ ସେହି କାରଖାନାର ଜିନିଷ ଆମଦାନୀ ଖୁବ୍ ହେଉଅଛି; କିନ୍ତୁ ମାଲ୍‌ଗୁଡ଼ିକ ସବୁ ସଚ୍ଚା ନା ଝୁଟା ? ଆମ୍ଭମାନଙ୍କ ବିବେଚନାରେ ଅନେକ ପରିମାଣରେ ଝୁଟା ଅର୍ଥାତ୍ ଯେଉଁମାନେ ପଣ୍ଡିତ ନାମରେ ବାହାରନ୍ତି, ସେମାନେ ସେ ନାମରେ ସର୍ବଥା ଯୋଗ୍ୟ କି ନା ଗଭୀର ସନ୍ଦେହର ବିଷୟ । ଏଥିରେ କେହି ମନେ କରିବେ ନାହିଁ ଯେ, ଆମ୍ଭେମାନେ ନର୍ମାଲ ସ୍କୁଲର ବେଦବେଦାନ୍ତବିଦ୍ ପଣ୍ଡିତ ଚାହୁଁଅଛୁଁ । ଆମ୍ଭମାନଙ୍କର କାମ ପୂରା ପଡ଼ିଲେ କଥା ସରିଲା, ବେଦବେଦାନ୍ତ ନ୍ୟାୟ ଦର୍ଶନରୁ କ'ଣ ଖାଇବୁଁ ?"

ସଂଗ୍ରାମ କରି ବହୁ କଷ୍ଟରେ ସଫଳତା ଲାଭ କଲି। ସ୍ତ୍ରୀ ପାଞ୍ଚବର୍ଷର ଶିଶୁପୁତ୍ରକୁ ଛାଡ଼ି ମୋହର ଅନୁଗମନ କଲେ। ଆତ୍ମୀୟସ୍ୱଜନଙ୍କ ସଙ୍ଗରେ ମଧ୍ୟ ଏକ ପ୍ରକାର ଚିର ବିଚ୍ଛେଦ ଘଟିଲା। ଏଇଟା ତାଙ୍କ ପକ୍ଷରେ କେଡ଼େ କଠୋର ତ୍ୟାଗ, ତାହା ସହଜରେ ବୁଝିପାରିବ। ମୋ ପକ୍ଷରେ ମଧ୍ୟ ଏହା ଗୋଟିଏ ଦୁଃସାହସିକତା ବୋଲିବାକୁ ହେବ। ଏ କାର୍ଯ୍ୟରେ ଜଣେ ଅଧେ ବନ୍ଧୁଙ୍କ ଛଡ଼ା ଅନ୍ୟ କାହାରିଠାରୁ ଉତ୍ସାହ ପାଇନାହିଁ। ସଂସାର ଦୃଷ୍ଟିରେ ଏହା କେବଳ ଅକୂଳ ସମୁଦ୍ରରେ ଲମ୍ଫ ଦେବା ଛଡ଼ା ଆଉ କିଛି ନୁହେଁ; କିନ୍ତୁ ପ୍ରଭୁ ଏକପ୍ରକାର କୂଳରେ ଲଗାଇଅଛନ୍ତି।

ସ୍କୁଲ କାର୍ଯ୍ୟ ସଙ୍ଗେ ସଙ୍ଗେ ବ୍ରାହ୍ମସମାଜର ଅନେକଗୁଡ଼ିଏ କାର୍ଯ୍ୟଭାର ଆସି ଉପରେ ପଡ଼ିଲା। ମନପ୍ରାଣ ଢାଳିଦେଇ ଉଭୟ କାର୍ଯ୍ୟ କରିବାକୁ ଲାଗିଲି–କର୍ମରେ କେବେ କ୍ଳାନ୍ତି ବା ଅବସାଦ ଅନୁଭବ କରିନାହିଁ। କ୍ରମେ ଅନେକଆଡ଼ୁ ଅନେକ କାର୍ଯ୍ୟଭାର ଆସି ପଡ଼ିଲା–ଅମ୍ଳାନବଦନରେ ସମସ୍ତ କରିବାକୁ ଲାଗିଲି; କିନ୍ତୁ ଏହାରି ମଧ୍ୟରେ ପୁସ୍ତକପାଠ, ଆଲୋଚନା ଯଥା ସମୟରେ ଚାଲିଥାଏ । ଶିକ୍ଷକ ଜୀବନରେ ଏହି ୧୫/୧୬ ବର୍ଷ ମଧ୍ୟରେ ନାନାଶ୍ରେଣୀର ବହୁ ପୁସ୍ତକ ଅଧ୍ୟୟନର ସୁଯୋଗ ପାଇଥିଲି। ତନ୍ମଧ୍ୟରେ ଇମର୍ସନ, ପାର୍କର, କାର୍ଲାଇଲ ମୋର ଅତ୍ୟନ୍ତ ପ୍ରିୟ ଥିଲେ। ସ୍କୁଲ କର୍ମସୂତ୍ରରେ ସ୍ୱର୍ଗୀୟ ଜଗନ୍ମୋହନ ରାୟଙ୍କ ସହିତ ପରିଚୟ ଓ ଘନିଷ୍ଠତା ଜନ୍ମିଲା।

ସେ ଖ୍ରୀଷ୍ଟୀୟ ଭାବର ବଡ଼ ପକ୍ଷପାତୀ ଥିଲେ ଏବଂ ଅନେକ ସାରବାନ୍ ଖ୍ରୀଷ୍ଟଧର୍ମର ଭକ୍ତିମୂଳକ ପୁସ୍ତକ ସଂଗ୍ରହ କରିଥିଲେ। ଶେଷ ଜୀବନରେ ତାଙ୍କର ଦୃଷ୍ଟିଶକ୍ତି କ୍ଷୀଣ ହୋଇଯିବାରୁ ପ୍ରତିଦିନ ସଂଧ୍ୟା ସମୟରେ ତାଙ୍କ ପାଖରେ ସେହିସବୁ ପୁସ୍ତକ ପାଠ କରିବା ପାଇଁ ସେ ମୋତେ ନିଯୁକ୍ତ କଲେ। ତହିଁରେ ମୋର ବିଶେଷ ଉପକାର ହୋଇଥିଲା। ମୋର ସାହିତ୍ୟ ଚର୍ଚ୍ଚାର ଆରମ୍ଭ ମଧ୍ୟ ଏହି ସମୟରେ। ବ୍ରାହ୍ମସମାଜ ପକ୍ଷରୁ ଉପର୍ଯ୍ୟୁପରି ଦୁଇ ଖଣ୍ଡି ପତ୍ରିକା ବାହାରି ବର୍ଷେ ଦେଢ଼ବର୍ଷ ପରେ ବନ୍ଦ ହୋଇ ଯାଇଥିଲା। ଉଭୟ ପତ୍ରିକାର ପରିଚାଳନା ଭାର ମୋ ଉପରେ ନ୍ୟସ୍ତ ହେଲା। ସାହିତ୍ୟ ଚର୍ଚ୍ଚା ସୂତ୍ରରେ ରାଧାନାଥ, ଫକୀରମୋହନ ପ୍ରଭୃତିଙ୍କୁ ନିକଟବନ୍ଧୁ ରୂପରେ ପାଇ ସେମାନଙ୍କ ସଙ୍ଗସାହଚର୍ଯ୍ୟରେ ପ୍ରଭୂତ ଉପକାର ଲାଭ କରିଥିଲି।

'ଉତ୍କଳ ସାହିତ୍ୟ' କଥା ଏଠି ଟିକିଏ କହିରଖେଁ । ବ୍ରାହ୍ମ ସମାଜ ପକ୍ଷରୁ ଉପର୍ଯ୍ୟୁପରି ଦୁଇଖଣ୍ଡି ପତ୍ରିକା ଅଚଳ ହୋଇଯିବାରୁ ଏବଂ ସମଗ୍ର ଉତ୍କଳରେ ଖଣ୍ଡିଏ ସୁଦ୍ଧା ପତ୍ରିକା ସ୍ଥାୟୀ ନ ହେବାରୁ ମଧୁସୂଦନଙ୍କ ପ୍ରବର୍ତ୍ତନାରେ 'ଉତ୍କଳ ସାହିତ୍ୟ'

ପ୍ରକାଶର ସୂଚନା ହେଲା। ମଧୁସୂଦନ, ଫକୀରମୋହନ, ଚନ୍ଦ୍ରମୋହନ, ସାଧୁଚରଣ, କୃଷ୍ଣପ୍ରସାଦ ଓ ମୁଁ ମିଳିତ ହୋଇ ସମସ୍ତ ବ୍ୟବସ୍ଥା ସ୍ଥିର କଲୁଁ। ମୁଁ ସମ୍ପାଦକ ହେଲି ଓ ମୋର ସୋଦରପ୍ରତିମ ବନ୍ଧୁ କୃଷ୍ଣପ୍ରସାଦ ମ୍ୟାନେଜର ହେଲେ। ଖୁବ୍ ଉତ୍ସାହରେ ପତ୍ରିକାର କାର୍ଯ୍ୟ ଆରମ୍ଭ ହେଲା; କିନ୍ତୁ ଆମ ଦେଶରେ ଯାହା ହୋଇଥାଏ, ଅଳ୍ପକାଳ ମଧ୍ୟରେ 'ଉତ୍କଳ ସାହିତ୍ୟ' ଭାଗ୍ୟରେ ମଧ୍ୟ ତାହା ହିଁ ଘଟିଲା। ଦୁଇବର୍ଷ କୌଣସି ପ୍ରକାରେ କଟିଗଲା। ତୃତୀୟ ବର୍ଷ ବେଳକୁ ନାନାଆଡୁ ନାନା ଅସୁବିଧା ଘଟିଲା। ମୁଦ୍ରଣର ଅସୁବିଧା ସର୍ବପ୍ରଧାନ। ଉଦ୍‌ଯୋଗୀମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ କରଛଡ଼ା ଦେଲେ। ଚାରିଆଡୁ ହତାଶ ହୋଇ ମୁଁ ନିଜେ ଥରେ ଚେଷ୍ଟା କରିବାକୁ ପ୍ରସ୍ତୁତ ହେଲି।

ସେ ଗୋଟିଏ ବିଚିତ୍ର ଇତିହାସ। ସବୁକଥା ଏଠି ଲେଖିବା ଅସମ୍ଭବ। ଘୋର ନିରାଶା ଭିତରେ ପ୍ରାର୍ଥନାପୂର୍ଣ୍ଣ ହୃଦୟରେ ଦୃଢ଼ ପ୍ରତିଜ୍ଞା ସହକାରେ ଅଗ୍ରସର ହେଲି। ପ୍ରାୟ ବର୍ଷକ ଚେଷ୍ଟାରେ ସାମାନ୍ୟ ଭାବରେ ପ୍ରେସ୍‌ଟିଏ ସ୍ଥାପନର ଆଶା ଦିଶିଲା। ସମ୍ପୂର୍ଣ୍ଣ ନିଜ ଦାୟିତ୍ୱରେ କେତେଗୁଡ଼ିଏ ଟଙ୍କା ଋଣ କରି ପ୍ରେସ କାର୍ଯ୍ୟ ଆରମ୍ଭ କଲି; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଏଥିରେ କେତେଗୁଡ଼ିଏ ବନ୍ଧୁଙ୍କର ଟିକିଏ ଈର୍ଷା ଜାଗି ଉଠିଲା। କେହି ମୁହଁରେ କିଛି ନ କୁହନ୍ତୁ, ଭିତରେ ଭିତରେ ବିମୁଖ ହୋଇଉଠିଲେ। ସବୁ ଜାଣିଶୁଣି ଗଭୀର ଦୁଃଖଭାର ହୃଦୟରେ ବହନ କରି ନୀରବରେ କର୍ମ ପଥରେ ଅଗ୍ରସର ହେଲି।

୧୯୦୦ ଜାନୁୟାରୀ ୧୦ ତାରିଖରେ ପ୍ରେସ୍ କାର୍ଯ୍ୟ ଆରମ୍ଭ ହେଲା; କିନ୍ତୁ ତତ୍‌ପୂର୍ବେ ନଭେମ୍ବର ମାସ ପହିଲାରୁ ସ୍କୁଲ କାର୍ଯ୍ୟ ତ୍ୟାଗ କରିଥିଲି। ମୋର ସ୍କୁଲ ତ୍ୟାଗର ପଶ୍ଚାତରେ ମଧ୍ୟ ଗୋଟିଏ କ୍ଷୁଦ୍ର ଇତିହାସ ଅଛି। ନିତାନ୍ତ ମର୍ମପୀଡ଼ିତ ହୋଇ ସ୍ତ୍ରୀ ଏବଂ ପାଞ୍ଚୋଟି ଅପୋଗଣ୍ଡ ଶିଶୁ ସନ୍ତାନଙ୍କୁ ନେଇ ପୁଣି ଅକୂଳ ସାଗରରେ ଲମ୍ଫ ଦେଲି। ତା' ପରେ କି କଠୋର ସଂଗ୍ରାମ ଭିତରଦେଇ ଆସିବାକୁ ହୋଇଅଛି, ସେ ସବୁ ବର୍ଣ୍ଣନା କରିବାକୁ ଗଲେ ଗୋଟାଏ ବଡ଼ ପୋଥି ହେବ। ଏ ଦୁର୍ବଳ ହୃଦୟରେ କାହୁଁ ଏତେ ସାହସ ଓ ଧୈର୍ଯ୍ୟ ଆସିଲା, ମୁଁ ନିଜେ ଭାବି ଅବାକ୍ ହୋଇଯାଏଁ।

ଜୀବନଟା ସଂଗ୍ରାମମୟ। ଏକୋଇଶି ବର୍ଷ ବୟସରେ ସେହି ଯେ ସଂଗ୍ରାମର ଆରମ୍ଭ, ଆଜି ମଧ୍ୟ ତାହାର ବିରାମ ନାହିଁ। ବାହାରର ସଂଗ୍ରାମର ସାମାନ୍ୟ ଟିକିଏ ଆଭାସ ଦେଇଅଛି। ଏସବୁ କେହି ପ୍ରାୟ ଜାଣନ୍ତି ନାହିଁ। ଅତି ଅନ୍ତରଙ୍ଗ ବନ୍ଧୁ ଜଣେ

ଅଧେ କେହି ଟିକିଏ ଅଧେ ଆଭାସ ପାଇଥାଇପାରନ୍ତି । ସାଧାରଣତଃ ପ୍ରାୟ ସମସ୍ତଙ୍କର ଧାରଣା, ବେଶ୍ ସ୍ୱଚ୍ଛନ୍ଦ ଭାବରେ ଜୀବନ କଟିଯାଉଛି । ନିଜର ସ୍ତ୍ରୀ ପୁତ୍ର ପରିବାରଙ୍କୁ ମଧ୍ୟ କେବେହେଲେ ଦୁଃଖ ଦୈନ୍ୟ ସଙ୍ଗେ ଚିର ସଂଗ୍ରାମ କଥା ଜାଣିବାକୁ ଦେଇନାହିଁ । ଏକାକୀ ନୀରବରେ ଆଜି ପର୍ଯ୍ୟନ୍ତ ସବୁ ବହନ କରିଆସିଅଛି । ଏପରି ସମୟ ଅନେକ ଥର ଆସିଛି, ଯେତେବେଳେ ସବୁଆଡ଼ର ଆଶା ଭରସା ଲୁପ୍ତ ହୋଇ ଯାଇଅଛି– କେଜାଣି ବା ଏଥର ସବୁ ଭାଙ୍ଗି ଚୂନା ହୋଇଗଲା; ପୁଣି ଅତି ଅପ୍ରତ୍ୟାଶିତ ଭାବରେ ସେ ଅନ୍ଧକାର କଟିଯାଇଅଛି । ସମସ୍ତ ଅବସ୍ଥାରେ ଏ ଜୀବନର ପ୍ରଧାନ ସମ୍ବଳ ପ୍ରାର୍ଥନା ଓ ଆତ୍ମନିବେଦନ । ଧନମାନର ଆକାଙ୍‌କ୍ଷା କେବେ କରିନାହିଁ–ସେଥିପାଇଁ ପ୍ରାର୍ଥନା କରିବା ତ ଦୂରର କଥା । ପ୍ରକୃତ କଥା, ସାଂସାରିକ କୌଣସି ବିଷୟ ପାଇଁ ପ୍ରାର୍ଥନା କରିବା ବ୍ରାହ୍ମସମାଜର ବିରୁଦ୍ଧ । ଖ୍ରୀଷ୍ଟଙ୍କର ସେହି ସରଳ ପ୍ରାର୍ଥନା ହିଁ ତ ଶ୍ରେଷ୍ଠ ଓ ପ୍ରକୃତ ପ୍ରାର୍ଥନା–'Let Thy will be done' । ବୈଷୟିକ ଉନ୍ନତିର ଅନେକ ସୁଯୋଗ ଇଚ୍ଛା କରି ଛାଡ଼ିଅଛି–ହୃଦୟରେ ଦ୍ୱିଧା ଅନୁଭବ କରି, କେଜାଣି ବା ମନଟା ଛୋଟ ହୋଇଯିବ । ସନ୍ତାନମାନଙ୍କୁ ବାରମ୍ବାର ଏହିକଥା କହି ଆସିଅଛି–ଆଉ ଯାହାକର ମନଟାକୁ କେବେ ଛୋଟ ହେବାକୁ ଦେବନାହିଁ ।

ସୌଭାଗ୍ୟ କ୍ରମେ ଜୀବନରେ ସାଧୁ ସହବାସ ଅନେକ ପାଇଅଛି ଏବଂ ସାଧୁ ଜୀବନର ପ୍ରଭାବ ମଧ୍ୟ ଯଥେଷ୍ଟ ଅନୁଭବ କରିଅଛି । ବାସ୍ତବିକ ଗୋଟିଏ ଗୋଟିଏ ପ୍ରକୃତ ସାଧୁଜୀବନ ଅନ୍ଧକାରମୟ ଜୀବନ ପଥରେ ଆଲୋକସ୍ତମ୍ଭ ସ୍ୱରୂପ କ୍ଷଣକେ କେତେ ଆଶା ପ୍ରାଣରେ ସଂଚାର କରିଦିଏ ।

ଜୀବନରେ ଆଘାତ ପାଇଅଛି ଅନେକ–କେତେ ଅପ୍ରତ୍ୟାଶିତ ସ୍ଥଳରୁ ଯେ ଆକସ୍ମିକ ଆଘାତ ଆସିଅଛି ଏବଂ ମୁହୂର୍ତ୍ତକ ପାଇଁ ପ୍ରାଣଟାକୁ ଆଲୋଡ଼ିତ କରି ଦେଇଅଛି, ତାହାର ଇୟତ୍ତା ନାହିଁ; କିନ୍ତୁ ତାହା ସେହି ମୁହୂର୍ତ୍ତକ ପାଇଁ । ଆଘାତ ଦେବାର ପ୍ରବୃତ୍ତିଟା ମୋ ଭିତରେ ନାହିଁ କହିଲେ ଚଳେ, ଜାଣିଶୁଣି କେବେ କାହାକୁ ଅକାରଣ ଆଘାତ ଦେଇନାହିଁ । ତେବେ କାର୍ଯ୍ୟ ଗତିରେ କଠୋର କର୍ତ୍ତବ୍ୟ ଓ ସତ୍ୟର ଅନୁରୋଧରେ ଅନେକ ସ୍ଥଳରେ ଅନେକ ଭାବରେ କେତେ ଲୋକଙ୍କୁ ଆଘାତ ଦେଇଅଛି, ତାହା ମଧ୍ୟ ବଡ଼ ଅନିଚ୍ଛାରେ । ଏତିକି ମଧ୍ୟ ଅନେକଙ୍କ ନିକଟରେ 'ଉଗ୍ରତା' ରୂପରେ ପରିଗଣିତ ହୋଇଅଛି । ଅନ୍ୟାୟ ବା ଅସତ୍ୟର ପ୍ରତିବାଦ କଲାବେଳେ କେବେ କାହାରି ମୁହଁକୁ

ଚାହିଁ କଥା କହିନାହିଁ। ଚକ୍ଷୁଲଜ୍ଜା ବୋଲି ଯେ ଗୋଟିଏ କଥା ଅଛି, ସେଇଟା ମୋର ଯଥେଷ୍ଟ ଥିଲେ ମଧ୍ୟ ଏପରି ବିଷୟରେ ସେଇଟାକୁ କେବେ ପ୍ରଶ୍ରୟ ଦେଇନାହିଁ। ଏଥିପାଇଁ ମୋର ଜଣେ ସୁରସିକ ବୃଦ୍ଧ ବନ୍ଧୁ ମୋତେ 'ଉଗ୍ର କ୍ଷତ୍ରିୟ' ଆଖ୍ୟା ଦେଇଥିଲେ। ଏ ଭାବଟା ବାଲ୍ୟାବସ୍ଥାରେ ବା ତରୁଣ ଅବସ୍ଥାରେ ନଥିଲା। ପିତୃ ପ୍ରକୃତିରେ ଏହି ଦିଗଟା ଧର୍ମ ଜୀବନର ଆରମ୍ଭ ସଙ୍ଗେ ସଙ୍ଗେ ଆଗେ ଜାଗି ଉଠିଲା; କିନ୍ତୁ ଆଘାତ ବଦଳରେ ଆଘାତ ଦେବାଟାକୁ ଚିରଦିନ ଅତି ଘୃଣ୍ୟ ମନେ କରିଅଛି। ଏପରି କି ଅନ୍ୟାୟ ଆକ୍ରମଣର ପ୍ରତିବାଦ କରିବା ପାଇଁ ବା ଆତ୍ମପକ୍ଷ ସମର୍ଥନ କରିବା ପାଇଁ ଅତି ଅଳ୍ପ ସମୟରେ ଚେଷ୍ଟା କରିଅଛି। ସେଇଟା ମୋତେ ନିତାନ୍ତ ଲଘୁତା ବୋଲି ମନେହୁଏ। ଏ ଦୀର୍ଘ ଜୀବନରେ ନିନ୍ଦା ଓ ପ୍ରଶଂସା ପ୍ରଚୁର ପରିମାଣରେ ପାଇଅଛି ଏବଂ ଉଭୟର ମୂଲ୍ୟ ବୁଝିଅଛି। ଅନେକ ସମୟରେ ଏସବୁ ଦେଖି ମନେ ମନେ ହସେଁ। ଅନେକ ସ୍ଥଳରେ ପ୍ରଶଂସାର ମାତ୍ରା ଦେଖି ହସିଅଛି। ନିଜ ଆଡ଼କୁ ଅନାଇ ତା'ର ଯୋଗ୍ୟତା କେଉଁଠି ଖୋଜି ପାଇନାହିଁ। ଅନେକ ନିନ୍ଦା ସମ୍ବନ୍ଧରେ ମଧ୍ୟ ଠିକ୍ ସେହି କଥା। ତାହା ବୋଲି ଯେ ଜୀବନରେ ନିନ୍ଦା ବା ପ୍ରଶଂସାର କଥା କିଛି ନାହିଁ, ତାହା ନୁହେଁ; କିନ୍ତୁ ସଂସାରରେ ଲୋକଙ୍କ ବିଚାରରେ ଯେ କେତେ ଭୁଲ ହୁଏ, ତାହା ଭଲରୂପେ ଅନୁଭବ କରିଅଛି ଏବଂ ସେଥିପାଇଁ ଚିତ୍ତ ସହଜରେ ବିଚଳିତ ହୁଏନାହିଁ।

ମୋ ଜୀବନଟା ଜ୍ଞାନ ପ୍ରଧାନ, କି ଭକ୍ତି ପ୍ରଧାନ ନିର୍ଣ୍ଣୟ କରିବା ବାହାରର କାହାରି ପକ୍ଷରେ କଠିନ। ମୂଳତଃ ଏହା ଭାବପ୍ରଧାନ କହିବାକୁ ହେବ। ଅତି ଅଳ୍ପରେ ହୃଦୟ ତରଳିଯାଏ—ଚକ୍ଷୁ ଲୋତକପୂର୍ଣ୍ଣ ହୁଏ। ଭାବୁକତାର ସ୍ରୋତରେ ଭାସି ଯିବା ମୋ ପକ୍ଷରେ ଖୁବ୍ ବେଶି ସମ୍ଭବ ଥିଲା; କିନ୍ତୁ ଧର୍ମବୁଦ୍ଧିର ଜାଗରଣ ସଙ୍ଗେ ସଙ୍ଗେ ପ୍ରଖର ବିବେକ ଓ ବିଚାର ଶକ୍ତିର ପ୍ରସ୍ଫୁଟନକୁ ସାଧନାର ବିଷୟ କରିଥିଲି ଏବଂ ସର୍ବ ବିଷୟରେ ତାହାକୁ ଅଗ୍ରବର୍ତ୍ତୀ କରି ରଖିବାକୁ ନିରନ୍ତର ଚେଷ୍ଟା କରିଅଛି। ସେହି ହେତୁରୁ ରକ୍ଷା ପାଇଯାଇଅଛି ଏବଂ ଭକ୍ତି ଭାବୁକତାରେ ପରିଣତ ହୋଇନାହିଁ। ଭକ୍ତିଧର୍ମ ଜୀବନର ଚରମ ଓ ସୁମିଷ୍ଟ ଫଳ। କିନ୍ତୁ ବିଚାରବୁଦ୍ଧି ବର୍ଜ୍ଜିତ ହେଲେ ତାହା ଅସତ୍ୟ ଓ କାଳ୍ପନିକ ବା କ୍ଷୁଦ୍ର ବସ୍ତୁରେ ଚରିତାର୍ଥତା ଅନୁଭବ କରି ସନ୍ତୁଷ୍ଟ ରହେ।

ଭାବୁକତାରେ ଯେ ଗୋଟାଏ ମୋହ ଅଛି, ତାହାର ହାତ ଅନେକେ ଏଡ଼ାଇ ପାରନ୍ତି ନାହିଁ। ସେଇଟାକୁ ମୁଁ ବଡ଼ ଭୟ କରେଁ ଏବଂ ବ୍ରାହ୍ମଜୀବନରେ ତାହାର

ମାତ୍ରାଧିକ୍ୟ ଦେଖିଲେ କ୍ଷୁଣ୍ଣ ହୁଏ। ସ୍ଥୁଳ କଥା, ସକଳ ବିଷୟରେ ସାମଞ୍ଜସ୍ୟର ମୁଁ ବଡ଼ ପକ୍ଷପାତୀ। ଏହି ସାମଞ୍ଜସ୍ୟ ସାଧନ କରିବା ପାଇଁ ସାରା ଜୀବନ ଚେଷ୍ଟା କରିଅଛି। କୌଣସି ବିଷୟରେ ମାତ୍ରାଧିକ ମୁଁ ସହ୍ୟ କରିପାରେ ନାହିଁ। ଏଥିପାଇଁ ଅନେକ ଅନ୍ତରଙ୍ଗ ବନ୍ଧୁଙ୍କ ସଙ୍ଗରେ କେତେ ମତଭେଦ ଓ ବିରୋଧ ଘଟିଅଛି। ଜୀବନରେ କେବେ ଶୁଷ୍କତା ଦେଖା ଦେବନାହିଁ—ହୃଦୟଟା ସର୍ବଦା ଭାବରେ ଟଣବଣ ହୋଇ ରହିଥିବ, ଏହିପରି ଆଶା କରିବା ବିଡ଼ମ୍ବନା; ଆଉ ଏଥିପାଇଁ ନାନା କୃତ୍ରିମ ଉପାୟ ଅବଲମ୍ବନ କରିବାକୁ ହେବ, ଏହା ମଧ୍ୟ ଅନୁଚିତ ଓ ଅନିଷ୍ଟକର। ମୋ ଜୀବନରେ ଅନେକ ସମୟରେ ଶୁଷ୍କତା ଆସିଅଛି; କିନ୍ତୁ ମୁହୂର୍ତ୍ତକ ପାଇଁ ହେଲେ ଆଶା ଛାଡ଼ିନାହିଁ। ଏ ଅବସ୍ଥାରେ ଧୈର୍ଯ୍ୟ ସହକାରେ ପ୍ରତୀକ୍ଷା କରିବା ଛଡ଼ା ଆଉ ଉପାୟ କ'ଣ? ନିର୍ଜନ ଉପାସନା, ସରଳ ପ୍ରାର୍ଥନା, ସୁମଧୁର ସଙ୍ଗୀତ ଶ୍ରବଣ ଓ ସାଧୁସଙ୍ଗ ଶୁଷ୍କତା ଦୂରୀକରଣର ପ୍ରକୃଷ୍ଟ ଉପାୟ ବୋଲି ଜାଣିଅଛି ଏବଂ ଏଥିରେ ଯଥେଷ୍ଟ ଫଳ ପାଇଅଛି।

ବ୍ରାହ୍ମଧର୍ମ ଜୀବନରୁ ସର୍ବପ୍ରକାର ସଂକୀର୍ଣ୍ଣତା ଦୂରକରି ଦେଇଅଛି। ସତ୍ୟ ଓ ସାଧୁତା ସମ୍ବନ୍ଧରେ ଦେଶକାଳର ବିଚାର କେବେ ମନକୁ ଆସିନାହିଁ। ଅନ୍ଧ ସ୍ୱାଦେଶିକତା ବା ସଂକୀର୍ଣ୍ଣ ସାମ୍ପ୍ରଦାୟିକତା କେବେ ହୃଦୟରେ ପୋଷଣ କରିନାହିଁ। ଧର୍ମମତର ବିଶୁଦ୍ଧତା ରକ୍ଷା କରିବାକୁ ସର୍ବଦା ଅତି ସାବଧାନ ସହିତ ଯତ୍ନ କରିଅଛି। ଆଜିକାଲି ଆମ ଦେଶରେ ଗୋଟିଏ ଭ୍ରାନ୍ତ ଓ ବିକୃତ ଉଦାରତା ଦେଖା ଦେଇଅଛି। ତାକୁ ନେଇ ଅନେକ ଲୋକ ଭାରି ବାହାଦୂରୀ କରନ୍ତି। ସବୁ ମତ ଭଲ, ସବୁଥିରେ ହାଁ'ଜୀ ହାଁ'ଜୀ କରିଯାଅ, ଏହା କଦାପି ଧର୍ମ ହୋଇ ନ ପାରେ—ଏହା ଚତୁର ସାଂସାରିକତା। ଏ ଭାବ ଦେଖିଲେ ମୋର ଚିତ୍ତ ବିଦ୍ରୋହୀ ହୋଇଉଠେ। ମତର ବିଶୁଦ୍ଧତାକୁ ଅନେକେ ଯେତେ ସାମାନ୍ୟ ମନେ କରନ୍ତି, ମୁଁ ସେପରି କରେନାହିଁ।

ବ୍ରାହ୍ମଧର୍ମ ବିଶୁଦ୍ଧ ଜ୍ଞାନ ଓ ସୁନିର୍ମଳ ବିବେକର ସୁଦୃଢ଼ ଭିତ୍ତି ଉପରେ ପ୍ରତିଷ୍ଠିତ। ପ୍ରେମ, ଭକ୍ତି, ପବିତ୍ରତା ତାହାର ଚରମ ଲକ୍ଷ୍ୟ ଓ ଚିର ସାଧାନାର ବିଷୟ। ଏହି ବ୍ରାହ୍ମଧର୍ମକୁ ସମଗ୍ର ମାନବଜାତିର ସର୍ବାଙ୍ଗୀନ ଉନ୍ନତି ଓ କଲ୍ୟାଣର ଶ୍ରେଷ୍ଠ ଉପାୟ ବୋଲି ଜାଣିଅଛି। ସତ୍ୟଂ, ଶିବଂ, ସୁନ୍ଦରଂ, ମଧୁରଂ—ଏହାକୁ ଜୀବନରେ, ପରିବାରରେ, ସମାଜରେ, ରାଷ୍ଟ୍ରରେ ସୁପ୍ରତିଷ୍ଠିତ କରିବାକୁ ହେବ; ଏହାଠାରୁ ବଳି ଆଉ ଉନ୍ନତ ଉଦାର ଆଦର୍ଶ କ'ଣ ହୋଇପାରେ? ଏଥିରେ କୌଣସି ପ୍ରକାର ସଂକୀର୍ଣ୍ଣତାର ସ୍ଥାନ ଥାଇ ନପାରେ। କେଉଁ ଧର୍ମର କେଉଁ ସତ୍ୟ ଭାବଟି ଏହା ଭିତରେ ନାହିଁ? ଏହାର

ବିକାଶର ସୀମା ବା କିଏ ନିର୍ଦ୍ଦେଶ କରିପାରେ ? ବିଶ୍ୱଭାବ, ବିଶ୍ୱମାନବିକତାର ଚରମ ଏହିଠାରେ। ତାହାର ଅନ୍ୟରୂପ ପ୍ରକାଶ ଏହା ନିକଟରେ ଖଣ୍ଡତା ମାତ୍ର। ବୌଦ୍ଧଧର୍ମର ବିଶ୍ୱକଲ୍ୟାଣ ଭାବନା ମୋର ପ୍ରତିଦିନର ଉପାସନାର ଶେଷ ଅଙ୍ଗ। ସେଥିପାଇଁ–

*"ସର୍ବେ ଭବନ୍ତୁ ସୁଖିନଃ ସର୍ବେ ସନ୍ତୁ ନିରାମୟାଃ*
*ସର୍ବେ ଭଦ୍ରାଣି ପଶ୍ୟନ୍ତୁ ମା କଶ୍ଚିତ୍ ଦୁଃଖଭାକ୍ ଭବେତ୍ ।"*

–ଏହି ମନ୍ତ୍ର ଉଚ୍ଚାରଣ କରିଥାଏଁ।

ଆଦର୍ଶଟା ବଡ଼ ଉଚ୍ଚ–ବଡ଼ କଠିନ। ଆଦର୍ଶଠାରୁ ଜୀବନଟା ଯେ କେତେ ତଳେ ରହିଅଛି, ତାହା ବେଶ ଅନୁଭବ କରିପାରୁଅଛି। ଜାଣିବାର, ବୁଝିବାର, ପାଇବାର କେତେ ଥିଲା ଓ କେତେ ଅଛି–ଲାଭ ହୋଇଅଛି କି ସାମାନ୍ୟ। କରିବାର ଯାହା ଥିଲା, ସେଥିରୁ କିଛି ଯେ ହୋଇପାରିନାହିଁ। ପ୍ରତିକୂଳ ଅବସ୍ଥା ସଙ୍ଗରେ ସଂଗ୍ରାମ କରୁକରୁ ଜୀବନଟା ଯେ ଶେଷ ହୋଇଆସିଲା। ଆଜି ଏ ବୟସରେ ଜୀବନର ବହୁ ବ୍ୟର୍ଥତା ଚକ୍ଷୁ ସମ୍ମୁଖରେ ପ୍ରତିଭାତ ହୋଇ ଅନେକ ସମୟରେ ପ୍ରାଣକୁ ବ୍ୟାକୁଳ କରି ପକାଏ।

ଆଉ ବେଶି କ'ଣ ଲେଖିବି–ଏହିଠାରେ ଶେଷ କରେଁ। ଲେଖିବାର କଥା ତ ଅନେକ ଅଛି–କିନ୍ତୁ ସେ ସୁଯୋଗ ଜୀବନରେ କ'ଣ ମିଳିବ ?



# ସଂଯୋଜକଙ୍କ ଆଲେଖ୍ୟ



## ଡାକ୍ତର କମଳାକାନ୍ତ କର

ସା/ପୋ - ମୂଳବସନ୍ତ
ଭାୟା - କୁଆଁପାଳ, ଜିଲ୍ଲା - କଟକ
ଓଡ଼ିଶା

# ବିସ୍ମରଣରେ ଉତ୍କଳୀୟସୂରୀ

ଓଡ଼ିଆଙ୍କ ମିଳନ ପୀଠ "ଉତ୍କଳ ସମ୍ମିଳନୀ"ର ପରିକଳ୍ପନା କରାହୋଇଥିଲା ଉତ୍କୃଷ୍ଟ କଳାର ପୀଠକୁ ଆଖିରେ ରଖି, ଓଡ଼ିଆ ମୂଳକ ସବୁକୁ ଏକତ୍ର କରି ତାର ଭାଷା, ସାହିତ୍ୟ ଓ ପରମ୍ପରାକୁ ବଞ୍ଚାଇ ରଖି, ସମସ୍ତଙ୍କ ଭିତରେ ମୈତ୍ରୀ ଭାବର ଉଦ୍ରେକ କରି, ତାହାର ଗାରିମାକୁ ଭାରତବର୍ଷର ଆଗଧାଡ଼ିରେ ରଖିବା ପାଇଁ । ଏହାର ଭୂମିପୂଜା ହୋଇଥିଲା ବ୍ରହ୍ମପୁରରେ ଓ ନିଅଁ ଖୋଳା ହୋଇଥିଲା ଧବଳଙ୍କଟଗର କଟକ ନଗରର ଇଦ୍‌ଗା ପଡ଼ିଆରେ ।

୧୯୦୩ ମସିହାର ଇଷ୍ଟର ଏପ୍ରିଲ୍ ମାସ ଶନିବାର ବ୍ରହ୍ମପୁରରେ ହୋଇଥିବା 'ଗଞ୍ଜାମ ଜାତୀୟ ସମ୍ମିଳନୀ'ର ପ୍ରଥମ ଅଧିବେଶନରେ, ଉତ୍କଳ ସମ୍ମିଳନୀର ଭୂମିପୂଜା ହୋଇଥିଲା ଏବଂ ଏହାର କର୍ତ୍ତା ଥିଲେ ସେଠାକୁ ନିମନ୍ତ୍ରିତ ହୋଇଥିବା ବାରିଷ୍ଟର ମଧୁସୂଦନ ଦାସ । ଏହି ମହାନ୍ ଉଦ୍ଦେଶ୍ୟ ସାଧନ କରିବା ପାଇଁ ମଧୁବାବୁଙ୍କ ସହିତ ଯାଇଥିଲେ ବାଗ୍ମି ବିଶ୍ୱନାଥ କର ଓ ତାଙ୍କର ପ୍ରିୟ ଶିଷ୍ୟ ପଲ୍ଲୀକବି ନନ୍ଦକିଶୋର ବଳ । ଏହାକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ସ୍ୱର୍ଗତ ବରେଣ୍ୟ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତି ତାଙ୍କର ଅମର ଲେଖା 'ଶତାବ୍ଦୀର ସୂର୍ଯ୍ୟ'ରେ ।

"ଗଞ୍ଜାମ ଜାତୀୟ ସମ୍ମିଳନୀର ପ୍ରଥମ ଅଧିବେଶନ ଅପ୍ରେଲ ମାସ ଇଷ୍ଟର ଅବକାଶରେ ଆହୁତ ହୋଇଥିଲା । ଏଥିରେ ଯୋଗଦେବା ପାଇଁ ବିଶେଷ ଭାବରେ ଆହୁତ ହୋଇଥିଲେ ମଧୁସୂଦନ । ସମ୍ମିଳନୀରେ ଯୋଗ ଦେବା ପାଇଁ ମଧୁସୂଦନଙ୍କ ସହିତ ଆସୁଥିଲେ ବିଶ୍ୱନାଥ କର, ନନ୍ଦକିଶୋର ବଳ ଓ ଗୋପାଳ ଚନ୍ଦ୍ର ପ୍ରହରାଜ ।

ସେମାନଙ୍କର ଯଥାଯୋଗ୍ୟ ସମାଦର ନିମିତ୍ତ ସେଦିନ ବ୍ରହ୍ମପୁର ଷ୍ଟେସନ୍‌ରେ ସେପରି ଜନ ସମାଗମ ହୋଇଥିଲା । ଷ୍ଟେସନ ପ୍ଲାଟ୍‌ଫର୍ମ ଲୋକାରଣ୍ୟ, ପ୍ଲାଟଫର୍ମ ବାହାରେ ଖଲ୍ଲିକୋଟ ରାଜାଙ୍କର ଗୋଟାଏ ଘୋଡ଼ାଗାଡ଼ି ଅପେକ୍ଷା କରି ରହିଥିଲା । କଟକ ଆଡୁ (ଅପ୍) ମାନ୍ଦ୍ରାଜ୍ ମେଲ ପହଞ୍ଚିବାରେ ଯେତିକି ବିଳମ୍ବ ହେଉଥିଲା, ପ୍ଲାଟ୍‌ଫର୍ମରେ ଲୋକସଂଖ୍ୟା ସେତିକି ବଢ଼ି ବଢ଼ି ଚାଲିଥିଲା । ସେହି ଲୋକ ଗହଳି ଭିତରେ ନବଗଠିତ ଗଞ୍ଜାମ ଜାତୀୟ ସମିତିର ସ୍ୱେଚ୍ଛାସେବକ ଓ ମୁଖିଆମାନେ ବ୍ୟସ୍ତ ବିବ୍ରତ ଭାବରେ ଇତଃସ୍ତତ ହେଉଥିଲେ ।"

ଏହାର ଆଠମାସ ପରେ, ସେହି ବର୍ଷ—ଅର୍ଥାତ୍ ୧୯୦୩ ଡିସେମ୍ବର ୩୦ ତାରିଖରେ ଏହି ଉତ୍କଳ ସମ୍ମିଳନୀର ନିଅଁ ଖୋଳା ହେଲା କଟକ ନଗରର ଇଦ୍‌ଗା ପଡ଼ିଆରେ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ସଭାପତିତ୍ୱରେ ଉତ୍କଳକୁ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠନ କରି ଓଡ଼ିଆ ଭାଷା ସାହିତ୍ୟକୁ ପ୍ରତିଷ୍ଠିତ କରିବାର ଲକ୍ଷ୍ୟ ରଖି । କାରଣ ଭାଷା ନ ଥିଲେ ଗୋଟିଏ ଜାତିର ସ୍ଥିତି ନ ଥାଏ । ସାହିତ୍ୟକୁ ବାଦ୍ ଦେଇ ଜାତି କାହିଁ ? ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତତର ବିକାଶ ଦିଗରେ ସୁପରିକଳ୍ପିତ ପଦକ୍ଷେପ ନେବା ଲକ୍ଷ୍ୟରେ ଏକ ଷ୍ଟାଣ୍ଡିଂ କମିଟି ଗଠନ ପାଇଁ କବିବର ରାଧାନାଥ ଆଣିଥିଲେ ଏକ ପ୍ରସ୍ତାବ । କବି ମଧୁସୂଦନ ରାଓ, ଗୋପାଳ ବଲ୍ଲଭ ଦାସ ଓ କବି ଗଙ୍ଗାଧର ମେହେରଙ୍କ ଦ୍ୱାରା ଏ ପ୍ରସ୍ତାବ ସମର୍ଥିତ ହୋଇଥିଲା, ଘନ ଘନ କରତାଳି ଧ୍ୱନି ମଧ୍ୟରେ । ଏହି ଷ୍ଟାଣ୍ଡିଂ କମିଟି ଗଠିତ ହୋଇଥିଲା ନିମ୍ନୋକ୍ତ ବ୍ୟକ୍ତିମାନଙ୍କୁ ଘେନି । ରାୟବାହାଦୂର ରାଧାନାଥ ରାୟ, ମଧୁସୂଦନ ରାଓ, ଫକୀର ମୋହନ ସେନାପତି, ବିଶ୍ୱନାଥ କର, ଅଭିରାମ ଭଞ୍ଜ, ନନ୍ଦକିଶୋରବଳ, ମଧୁସୂଦନ ଦାସ ଓ ଗୋପାଳ ଚନ୍ଦ୍ର ପ୍ରହରାଜ । ଉତ୍କଳ ନାମକୁ ସାହିତ୍ୟ ସହିତ ମିଶାଇ, ଉତ୍କଳ ସାହିତ୍ୟକୁ ଲୋକାର୍ପିତ କରିବାର ସିଦ୍ଧାନ୍ତରେ ବିଶ୍ୱନାଥ କରଙ୍କ ସମ୍ପାଦନାରେ ୧୮୯୭ ମସିହାର ପୁଣ୍ୟ ଓଡ଼ିଆ ନବଦିନ, ପଣା ସଂକ୍ରାନ୍ତିରୁ ପ୍ରକାଶ ପାଉଥିବା ଉତ୍କଳ-ସାହିତ୍ୟ ପତ୍ରିକାର କାର୍ଯ୍ୟକୁ ଦୃଷ୍ଟିରେ ରଖି ଏହି କମିଟିର ଆବାହକ ରୂପରେ ଏହାର ସମ୍ପାଦକ ବିଶ୍ୱନାଥ କରଙ୍କୁ ଚୟନ କରାହୋଇଥିଲା ।

ଏହି କାର୍ଯ୍ୟରେ ବିଶ୍ୱନାଥ କର କେତେଦୂର ସଫଳତା ପ୍ରଦର୍ଶନ କରିଛନ୍ତି ତାହା ନିମ୍ନୋକ୍ତ କେତେକ ପ୍ରାମାଣିକ ତଥ୍ୟ ଏହାର ପ୍ରମାଣ ।

"ହେ ସାହିତ୍ୟ ମହୀରୁହ ! କେତେ ଯେ ସାହିତ୍ୟ ଗୁଳ୍ମ ଓ ସାହିତ୍ୟ ଲତା ତୁମ ଛାୟା ଓ ଆଶ୍ରୟରେ ବର୍ଦ୍ଧିତ ହୋଇଅଛନ୍ତି, ତାହା କଳନା କରିବା ଦୁଃସାଧ୍ୟ । ଏହି ଗୁଳ୍ମ ଓ ଲତାଗୁଡ଼ିକ ସାହିତ୍ୟ ପୁଷ୍ପଫଳ ଧାରଣ କରି ଉତ୍କଳରେ ସୌରଭ ବିସ୍ତାର କରିଅଛନ୍ତି ଓ ମାନସିକ ସ୍ୱାସ୍ଥ୍ୟ ବିଧାନର ସାହା ହୋଇଅଛନ୍ତି ।"

*—ଶ୍ରୀ ଶଶିଭୂଷଣ ରାୟ*

"ବିଶ୍ୱନାଥଙ୍କର ବିଚକ୍ଷଣ ଶକ୍ତି ବଳରେ, ଗୁଣ ଚିହ୍ନିବା ଶକ୍ତି ବଳରେ, କେତେ କେତେ ଯୁବକ ତାଙ୍କ ସ୍ପର୍ଶରେ କବି ଓ ସାହିତ୍ୟିକ ହୋଇନାହାନ୍ତି ! ଆଧୁନିକ ଯୁଗର ଅଧିକାଂଶ ସାହିତ୍ୟିକ ଓ କବି ଯେ ତାଙ୍କ ଠାରେ ବିଶେଷ ଭାବରେ ଋଣୀ, ଏହା କହିବା ବାହୁଲ୍ୟମାତ୍ର ।"

*—ଶ୍ରୀମତୀ ସରଳା ଦେବୀ*

ଓଡ଼ିଆ ଭାଷା, ସାହିତ୍ୟ ତଥା ସଂସ୍କାର ପ୍ରତି ତାଙ୍କର ଅଙ୍ଗୀକାରବଦ୍ଧତା ତଥା ଦାୟିତ୍ୱବୋଧ ନିମ୍ନ କେତେକ ଘଟଣାରୁ ଅତ୍ୟନ୍ତ ସ୍ପଷ୍ଟ । ବାଗ୍ମୀ ବିଶ୍ୱନାଥ କରଙ୍କର ସାହିତ୍ୟାନୁରାଗ, ବାଗ୍ମିତା ଓ ଅସ୍ପୃଶ୍ୟତା ବିରୋଧୀ ମତବାଦକୁ ଆଧାର କରି ୧୯୧୨ ଏପ୍ରିଲ ପହିଲାରେ ବିହାର, ଓଡ଼ିଶା ଓ ଛୋଟ ନାଗପୁରକୁ ନେଇ ଗଠିତ ହୋଇଥିବା ଅଞ୍ଚଳର ବ୍ୟବସ୍ଥା ସଭା—ବିହାର-ଓଡ଼ିଶା କାଉନ୍‌ସିଲକୁ ପାଞ୍ଚବର୍ଷ ପାଇଁ ହରିଜନଙ୍କ ପ୍ରତିନିଧିତ୍ୱ କରିବା ପାଇଁ ଚୟିତ ହୋଇଥିଲେ । ସେଠାରେ ନିଜର ଭାଷାପ୍ରେମର ଯେଉଁ ନିଦର୍ଶନ ସେ ସମୟରେ ଦେଖାଇଛନ୍ତି, ତାହା ଉତ୍କଳ ସମ୍ମିଳନୀର ବିଗତ ଏକ ଶତାବ୍ଦୀ ମଧ୍ୟରେ ବି ଦ୍ୱିରୁକ୍ତି ହୋଇନାହିଁ ।

ବିଶ୍ୱନାଥ ପ୍ରଥମେ ଯେଉଁଦିନ ଭାଷଣ ଦେବାପାଇଁ ସଭାରେ ଦଣ୍ଡାୟମାନ ହେଲେ, ସେଦିନର ଅଧିବେଶନଟି ବିହାର-ଓଡ଼ିଶା କାଉନ୍‌ସିଲର ଇତିହାସରେ ଚିରସ୍ମରଣୀୟ । ସେକାଳର ବ୍ୟବସ୍ଥା ସଭାରେ କେବଳ ଇଂରାଜୀରେ ଭାଷଣ ଦେବାର ରୀତି ପ୍ରଚଳିତ ଥିଲା । ବିଶ୍ୱନାଥ କିନ୍ତୁ ସେହି ପ୍ରଚଳିତ ରୀତିକୁ ସାହସର ସହିତ ଭଙ୍ଗ କରି ନିଜ ମାତୃଭାଷା ଓଡ଼ିଆରେ ବକ୍ତୃତା ଦେବାକୁ ବାହାରିଲେ । ତାଙ୍କ ମୁଖରୁ କେତୋଟି ମାତ୍ର ପଦ ନିର୍ଗତ ହେଉ ନ ହେଉଣୁ, ଅଣଓଡ଼ିଆ ସଭ୍ୟ ମହଲରୁ ପ୍ରବଳ ପାଟିତୁଣ୍ଡ ହେଲା, 'ମାନ୍ୟବର ସଭ୍ୟ ଓଡ଼ିଆରେ କହିପାରିବେ ନାହିଁ, ତାଙ୍କୁ ଅଲବତ୍ ଇଂରାଜୀରେ କହିବାକୁ ହେବ ।'

ବିଶ୍ୱନାଥ ସର୍ଦ୍ଦାର ସହିତ ଏ ପ୍ରକାର ଅହେତୁକ ପ୍ରତିବାଦର ଶାଣିତ ଉତ୍ତର ଦେଲେ :

"ଓଡ଼ିଆ ଏକ ସ୍ୱୀକୃତ ପ୍ରାଚୀନ ଭାଷା, ମୁଁ ଓଡ଼ିଆ, ମୋର ଭାଷା ଓଡ଼ିଆ, ମୋର ଓଡ଼ିଆ ଜିଭକୁ କାଟିଦେବାର ଅଧିକାର ଏଠାରେ କୌଣସି ମାନ୍ୟବର ସଭ୍ୟଙ୍କର ନାହିଁ । ମୋତେ ଓଡ଼ିଆ ଭାଷାରେ କୁହାଇ ନ ଦେବାକୁ ଅପଚେଷ୍ଟା କରିବାର ପରୋକ୍ଷ ଅର୍ଥ ଯେ ମୋର ପରମାରାଧ୍ୟା ଉତ୍କଳମାତା ଓ ଉତ୍କଳଭାରତୀଙ୍କ ପ୍ରତି ଉପେକ୍ଷା ଓ ଅସମ୍ମାନ ପ୍ରଦର୍ଶନ ଛଡ଼ା, ଅନ୍ୟକିଛି ନୁହେଁ । ଏହା ବିରୋଧକାରୀ ସଭ୍ୟ ବନ୍ଧୁମାନେ ଶୀତଳ ମସ୍ତିଷ୍କରେ ହୃଦୟଙ୍ଗମ କରିବା ଉଚିତ ।"

ସ୍ୱୟଂ ଲାଟ ସାହେବଙ୍କୁ ଏହି ବିବାଦୀୟ ପ୍ରଶ୍ନର ତାତ୍କ୍ଷଣିକ ସମାଧାନ କରିବାକୁ ହେଲା । ସେ ନିର୍ଦ୍ଦେଶ ଦେଲେ, "ଗୃହର ସୁବିଧା ଦୃଷ୍ଟିରୁ ଇଂରାଜୀ ଭାଷାରେ ଭାଷଣ ଦେବାର ପରମ୍ପରା ରହିଆସିଥିଲେ ହେଁ ଏହା ବିଧିଗତ ବାଧ ବାଧକତା ଦ୍ୱାରା ନିୟନ୍ତ୍ରିତ ନୁହେଁ । କେହି ମାନ୍ୟବର ସଭ୍ୟ ନିଜ ମାତୃଭାଷାରେ ଭାଷଣ ଦେବାକୁ ଇଚ୍ଛା କଲେ ସେଥିପାଇଁ କୌଣସି ବୈଧାନିକ ବାଧା ନାହିଁ ।"

"ଅସାମାନ୍ୟ ବାଗ୍ମିତା ପଟୁ ବିଶ୍ୱନାଥ ଓଡ଼ିଆରେ ବକ୍ତୃତା ଆରମ୍ଭ କରିଦେଲେ । ତାଙ୍କର ଓଜସ୍ୱୀନି ଭାଷାପୂର୍ଣ୍ଣ ବିରାମହୀନ ଭାଷଣ ସଭାଗୃହର ପ୍ରତ୍ୟେକ ବ୍ୟକ୍ତିଙ୍କୁ ସ୍ତବ୍ଧ ଓ ଚମକିତ କରିଦେଲା । ଓଡ଼ିଆରେ ଯେ ଏପରି ଅନର୍ଗଳ ବକ୍ତା ଅଛନ୍ତି, ସମୁଚ୍ଚଭାବ ଭାବନା ରାଶି ପ୍ରାଞ୍ଜଳ ଭାବରେ ଓ ମନୋଜ୍ଞ ଭଙ୍ଗୀରେ ପ୍ରକାଶ କରିବାକୁ ଓଡ଼ିଆ ଭାଷାରେ ଯେ ଏତେ ବିପୁଳ ଶବ୍ଦ ସମ୍ଭାର ରହିଛି, ସେହିଦିନ ହିଁ ଉପସ୍ଥିତ ସଦସ୍ୟ ବୃନ୍ଦ ପ୍ରଥମେ ଧାରଣା କରିପାରିଲେ ।"

ଏହି ବାଗ୍ମିତା ଓ ଭାଷାଜ୍ଞାନର ପଟୁତା ପାଇଁ "ଓଡ଼ିଆ ଜାତିର ମିଳନ ପୀଠ ଉତ୍କଳ-ସମ୍ମିଳନୀର ସେ ଥିଲେ ଅନଳସ ପଞ୍ଚକର୍ମୀ ଓ ଉଦ୍‌ଗାତା ପ୍ରବକ୍ତା ।" କିନ୍ତୁ ଅତ୍ୟନ୍ତ ଦୁଃଖର ସହିତ ଏବେ ସେହି 'ଉତ୍କଳ ସମ୍ମିଳନୀ'ର ମହାଅଧିବେଶନ ପରିପ୍ରେକ୍ଷୀରେ ପ୍ରକାଶ ପାଇଥିବା ସ୍ମରଣିକାରେ ତାଙ୍କୁ ଜଣେ ଅପାଙ୍‌କ୍ତେୟ ଭାବରେ ଗ୍ରହଣ କରାଯାଉଥିବା କଥା କହିବାକୁ ହେଉଛି, ଯେହେତୁ, ଆଜି ଦିନରେ ଉତ୍କଳ ସମ୍ମିଳନୀର ବିଭିନ୍ନ ଶାଖାରେ ପ୍ରକାଶ ପାଉଥିବା ବିଭିନ୍ନ ପ୍ରାକ୍ତନ ସୁରୀମାନଙ୍କ ମଧ୍ୟରେ ତାଙ୍କର ନାମ ଦୃଷ୍ଟିଗୋଚର ହୁଏନାହିଁ ।

ଏହିପରି ଅନେକ ଅଛନ୍ତି, ସେମାନଙ୍କ ମଧ୍ୟରୁ ବ୍ରଜ ସୁନ୍ଦର ଦାସ ଅନ୍ୟତମ । କାରଣ ଅତି ସ୍ପଷ୍ଟ । ୧୯୨୦ ଡିସେମ୍ବର ୩୦ ତାରିଖ ଦିନ ଉତ୍କଳ ସମ୍ମିଳନୀର ଷୋଡ଼ଶ ଅଧିବେଶନ ସିଂହଭୂମ ଜିଲ୍ଲାର ଚକ୍ରଧରପୁର ଠାରେ ହେଉଥିବା ଅବସରରେ ଯେଉଁ ପ୍ରସ୍ତାବ : "ଉତ୍କଳ ସମ୍ମିଳନୀ ଜରିଆରେ ଇଂରେଜ ସରକାରଙ୍କୁ ମାଗିଲେ ସେ ଯେ ଗଞ୍ଜାମ, ସିଂହଭୂମ ଓ ଅନ୍ୟାନ୍ୟ ଓଡ଼ିଆ ଅଞ୍ଚଳକୁ ଓଡ଼ିଶା ସଙ୍ଗେ ମିଶାଇ ଦେବେ ଓ ସ୍ୱତନ୍ତ୍ର ପ୍ରଦେଶ ଦେଇଦେବେ ତାହା ନୁହେଁ । କଂଗ୍ରେସ ଜରିଆରେ ଆମେ ଏହା ପାଇପାରିବା । ଗଞ୍ଜାମ, ସିଂହଭୂମ ଓ ଅନ୍ୟାନ୍ୟ ଉପାନ୍ତ ଓଡ଼ିଆ ଅଞ୍ଚଳକୁ କଂଗ୍ରେସ ଦ୍ୱାରା ସ୍ୱୀକୃତ କରାଇ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିରେ ମିଶାଇ ଦେବାପାଇଁ ଚେଷ୍ଟା କରିବା ଅପେକ୍ଷାକୃତ ସହଜ । ଏହାଦ୍ୱାରା ମିଶ୍ରଣ ଦାବି ମଧ୍ୟ ମହାଭାରତୀୟ ସ୍ତରରେ ଗୃହୀତ ହୋଇଯିବ । ଏହାଦ୍ୱାରା ଉତ୍କଳ ଦେଶ ମିଶ୍ରଣ ସମସ୍ୟାର ଗୁରୁତ୍ୱ ଓ ଯୌକ୍ତିକତା ଅନ୍ୟମାନେ ଉପଲବ୍ଧି କରିପାରିବେ । ନିଖିଳ ଭାରତ କଂଗ୍ରେସ ଦେଶ ମିଶ୍ରଣକୁ ସ୍ୱୀକାର କରିନେଇ ସେହି ଅନୁସାରେ ଉତ୍କଳ ପାଇଁ ସଂଗଠନରେ କଂଗ୍ରେସ ପ୍ରଦେଶ ସ୍ୱୀକାର କରିନେଲେ, ପନ୍ଥା ସହଜ ହୋଇଯିବ । ଜୟ ସୁନିଶ୍ଚିତ ।"

ବ୍ରଜ ସୁନ୍ଦର ଦାସ ଓ ବିଶ୍ୱନାଥ କରଙ୍କ ସହିତ ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ, ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ, ଶ୍ରୀ ଶିରିଷ ଚନ୍ଦ୍ର ଘୋଷ ଓ ମହନ୍ତ ରାଧାକୃଷ୍ଣ ଦାସ ଗୋସ୍ୱାମୀ ଏହାକୁ ପ୍ରବଳ ଭାବରେ ବିରୋଧ କରିଥିଲେ । ଏବଂ ସେହିଦିନ ଠାରୁ ଉତ୍କଳର ଗାରିମା ଓ ମର୍ଯ୍ୟାଦାକୁ ଋଦ୍ଧିମନ୍ତ କରିଥିବା ଉତ୍କଳ ସମ୍ମିଳନୀର ଏହି ଦୂରଦ୍ରଷ୍ଟା ସୂରୀମାନେ ବିସ୍ମୃତିର ଗଭୀର ଗହ୍ୱର ମଧ୍ୟକୁ ଚାଲିଗଲେ । ମାତ୍ର ବର୍ତ୍ତମାନ ଯୁବପିଢ଼ି କ'ଣ ଏ ପର୍ଯ୍ୟନ୍ତ ବୁଝିପାରିଲେ ନାହିଁ ଯେ, ଏହି ସୁରୀସଂଗ୍ରାମୀଙ୍କ ଯୁକ୍ତି କେତେଦୂର ସତ୍ୟରେ ପରିଣତ ହୋଇଛି ? ସେହି କଂଗ୍ରେସର ଶାସନ କାଳରେ ସ୍ୱାଧୀନ ଭାରତର ପ୍ରଥମ ଦଶନ୍ଧିରେ ଉପରୋକ୍ତ ପ୍ରସ୍ତାବ ବହୁ ମତରେ ସମ୍ମିଳନୀର ମହାଧିବେଶନରେ ଗ୍ରହଣ କରାଯାଇଥିଲା ଯେଉଁ ସ୍ଥାନରେ, ବର୍ତ୍ତମାନ ତାହା କେଉଁ ରାଜ୍ୟ ମଧ୍ୟରେ ? ଆଉ ଓଡ଼ିଶା ସୀମାନ୍ତରେ ଥିବା ମଞ୍ଜୁଷାରୁ ମଣ୍ଡାସା ହୋଇଥିବା ସ୍ଥାନରେ ଜନ୍ମଲାଭ କରି, ଏହି ସମ୍ମିଳନୀର ଯାବଜ୍ଜୀବନ ସ୍ଥାୟୀ ସଭାପତି ପଦରେ ଅଭିଷିକ୍ତ ହୋଇ ରହିବା ପାଇଁ ଲାଳାୟିତ ଏହି ଉତ୍କଳ ସମ୍ମିଳନୀର ପ୍ରାକ୍ତନ ସଭାପତି ତାହାକୁ ଓଡ଼ିଶା ସହିତ ମିଶାଇବାରେ କେତେଦୂର ସଫଳ ହୋଇଛନ୍ତି, ବା ସେଠାରେ ଓଡ଼ିଆ ଭାଷା ବଞ୍ଚାଇବା ପାଇଁ ସଫଳତାର ପରାକାଷ୍ଠା ଦେଖାଇଛନ୍ତି ଅତୀତକୁ ହେଜି ?

ଚକ୍ରଧରପୁର 'ଉତ୍କଳ ସମ୍ମିଳନୀ'ର ଅଧିବେଶନ ପରେ 'ଉତ୍କଳ ସାହିତ୍ୟ' ୩୨ ଭାଗ ଷଷ୍ଠ ସଂଖ୍ୟା ଆଶ୍ୱିନ ୧୩୩୫ ସାଲର ସମ୍ପାଦକୀୟ 'ଓଡ଼ିଆ ଦେଶ ମିଶ୍ରଣ' ଏଠାରେ ପ୍ରଣିଧାନଯୋଗ୍ୟ । କେତେ ବାସ୍ତବବାଦୀ ତାହା ଥିଲା ସେକଥା ବର୍ତ୍ତମାନର ଉତ୍କଳ ସମ୍ମିଳନୀର ସଦସ୍ୟମାନେ ହୃଦୟଙ୍ଗମ କରୁଛନ୍ତି କି—ଆଧୁନିକ ରାଜନୀତି ପ୍ରଭାବିତ ଜନସାଧାରଣଙ୍କ କଥା ଛାଡ଼ନ୍ତୁ । ତେଣୁ ସେ ସମ୍ପାଦକୀୟର ଉଦ୍ଧୃତି ଏଠାରେ ପ୍ରକାଶ କରାଯିବା ସମିଚୀନ ମନେ କରୁଅଛି ।

"ଭାରତରେ ବର୍ତ୍ତମାନ ରାଜନୀତିର ପ୍ରକୃତି ଓ ଗତି ନିର୍ଣ୍ଣୟ କରିବା କାହାରି ସାଧ ନାହିଁ । ଅସହଯୋଗୀମାନେ ଏହି କେତେଟା ବର୍ଷ ମଧ୍ୟରେ କେତେ ରୂପ ଧରିଲେଣି ତାହାର ଇୟତ୍ତା ନାହିଁ । ସହଯୋଗୀମାନେ ମଧ୍ୟ କେତେବେଳେ କ'ଣ କରୁଅଛନ୍ତି ଓ କହୁଅଛନ୍ତି ତାହାର ମର୍ମ ବୁଝିବା ଦୁସାଧ । ଜନସାଧାରଣ କେତେବେଳେ କ'ଣ ବୁଝି କେଉଁଆଡ଼କୁ ଢଳୁଛନ୍ତି, ତାହା ସେମାନେ ନିଜେ ଜାଣନ୍ତି ନାହିଁ । ଅଥଚ ବ୍ରିଟିଶ ରାଜତ୍ୱଟା ଦେଶରେ ପୂର୍ବେ ଯେପରି ଅଚଳ ଅଟଳ ଥିଲା, ବର୍ତ୍ତମାନ ମଧ୍ୟ ସେହିପରି ରହିଅଛି । ସରକାରୀ କାର୍ଯ୍ୟଗୁଡ଼ାକ ଠିକ୍ ପୂର୍ବବତ୍ ମାମୁଲି ରୀତିରେ ଚାଲିଅଛି । ରାଜନୈତିକ ଆନ୍ଦୋଳନର ପ୍ରୟୋଜନୀୟତା ଆମ୍ଭେମାନେ ଅସ୍ୱୀକାର କରୁନାହୁଁ ବା ସର୍ବପ୍ରକାର ଆନ୍ଦୋଳନ ନିଷ୍ଫଳ ହୋଇଅଛି । ଏହା ମଧ୍ୟ କହୁନାହୁଁ । କଥା ଏତିକି ଯେ, ବାସ୍ତବତାକୁ ଅଗ୍ରାହ୍ୟ କରି କଳ୍ପନାର ପଶ୍ଚାତ୍ୟରେ ଧାଇଁବାରେ କେବଳ ଅକାରଣ ଶକ୍ତିକ୍ଷୟ ଛଡ଼ା ଅନ୍ୟ କିଛି ଫଳ ନାହିଁ । ପରନ୍ତୁ, ଏଥିରେ ଯେଉଁ ଆତ୍ମପ୍ରସାଦ ତାହା ଆତ୍ମପ୍ରତାରଣାର ନାମାନ୍ତର ମାତ୍ର । ବିଗତ ୬/୭ ବର୍ଷ କାଳ ଗୋଟାକ ପରେ ଗୋଟାଏ ଉତ୍ତେଜନା ସୃଷ୍ଟି କରି ସାଧାରଣଙ୍କ ଚିତ୍ତରେ ମାଦକତା ଆନୟନ କରିବା ବର୍ତ୍ତମାନ ନେତୃତ୍ୱ ଦଳର ପ୍ରଧାନ କାର୍ଯ୍ୟ ହୋଇଅଛି । ତାହାର ଫଳରେ ଦେଶବାସୀ ଯେ ନାନା ଦିଗରେ ବହୁ ସୁଯୋଗ ହରାଇ ଅଛନ୍ତି ଏଥିରେ ସନ୍ଦେହ ନାହିଁ । ଏମନ୍ତ କି, ଦେଶର କେତେ ଅନୁଷ୍ଠାନ ଏ ଆବହାୱାରେ ବର୍ଦ୍ଧିତ ହେବା ଦୂରେଥାଉ, ନଷ୍ଟ ବା ନିର୍ଜୀବ ହୋଇପଡ଼ିଅଛି । ଆମ୍ଭେମାନେ ବର୍ତ୍ତମାନ ସେ ସମସ୍ତର ହିସାବ କରିବାକୁ ଯାଉନାହୁଁ । ସ୍ୱରାଜ୍ୟ ସ୍ୱପ୍ନର ମୋହର ପ୍ରଥମ ଧୋକାରେ ଆମ୍ଭମାନଙ୍କ ଉତ୍କଳ ଖଣ୍ଡର ସର୍ବପ୍ରଧାନ ଅନୁଷ୍ଠାନ ଉତ୍କଳ ସମ୍ମିଳନୀଟି ଯେ କ୍ଷୟପ୍ରାପ୍ତ ହୋଇଅଛି, ଏହା ସମସ୍ତେ ଜାଣନ୍ତି । ସମଗ୍ର ଉତ୍କଳଭାଷୀ ପ୍ରଦେଶର ସମ୍ମିଳନ ଉତ୍କଳ ସମ୍ମିଳନୀର ସର୍ବପ୍ରଧାନ ଲକ୍ଷ୍ୟ ଥିଲା ଏବଂ ଏହାଦ୍ୱାରା ଆଉ କିଛି ହେଉ ବା ନ ହେଉ, ଏହି ମିଳନର ଆକାଙ୍‌କ୍ଷାଟା ଯେ ଉତ୍କଳଖଣ୍ଡର ସର୍ବାନ୍ତରେ ଜାଗ୍ରତ ହୋଇଉଠିଥିଲା

ଏହା ସମସ୍ତେ ପ୍ରତ୍ୟକ୍ଷ କରିଅଛନ୍ତି । ଏହି ସମ୍ମିଳନୀ ସଙ୍ଗେ ସଙ୍ଗେ ଏ ଦିଗରେ ସର୍ବପ୍ରକାର ଉଦ୍ୟମ ମଧ୍ୟ ପ୍ରାୟ ଲୁପ୍ତ ହୋଇଥିଲା । ଅସହଯୋଗୀ ଦଳ ତ ସବୁଭାର ସ୍ୱରାଜୀ କଂଗ୍ରେସ ଉପରେ ଦେଇ ଏକପ୍ରକାର ନିଶ୍ଚିନ୍ତ ରହିଲେ । ସହଯୋଗୀମାନଙ୍କ କ୍ଷୀଣ ଉଦ୍ୟମରେ ଯାହା ହେଲା, ତାହା ଏଥିପାଇଁ ଯଥେଷ୍ଟ ନୁହେଁ । ଦେଶ ମିଶ୍ରଣ ବିଷୟରେ ସହଯୋଗୀ ଅସହଯୋଗୀ କାହାରି ମତଦ୍ୱୈଧ ନାହିଁ । ପୁଣି ଦେଶ ମିଶ୍ରଣଟା ଯେ ସମ୍ପୂର୍ଣ୍ଣ ରୂପେ ସରକାରୀ ବ୍ୟାପାର ଏଥିରେ ମଧ୍ୟ ଭିନ୍ନ ମତ ନାହିଁ । ତେବେ ସମସ୍ତେ ମିଶି ଏଥିପାଇଁ ସମୁଚିତ ଚେଷ୍ଟା କରିବାରେ ଆପତ୍ତିଟା କ'ଣ ? ଅସହଯୋଗୀଙ୍କ ବର୍ଜନ ନୀତି ତ ଯାଇ କେଉଁ ଅତଳ ଗର୍ଭ ଭିତରେ ରହିଲାଣି । ସବୁକ୍ଷେତ୍ରରେ ପ୍ରବେଶ କରି ଏମାନେ ସରକାରଙ୍କ ଆଇନ୍ ଓ ଆଦେଶ ମାନି ଚଳୁଅଛନ୍ତି । ଏ କ୍ଷେତ୍ରରେ ଦେଶର ଦାବି ଘେନି ସରକାରଙ୍କ ଦ୍ୱାରରେ ଉପସ୍ଥିତ ହେବାରେ ଦୋଷ ଲାଗିବ କାହିଁକି ? ସାଇମନ୍ କମିଶନ ଦେଶକୁ ସବୁ ଦେଇଯିବ, ଏକଥା କେହି କହୁନାହିଁ । ଦେଶ ମିଶ୍ରଣ ବିଷୟ କମିଶନ ନିକଟରେ ଉପସ୍ଥାପିତ କଲାମାତ୍ରେ ଏହା ସମ୍ପୂର୍ଣ୍ଣ ମଙ୍ଗଳ ହେବ । ଏହା ମଧ୍ୟ କେହି କହିପାରିବେ ନାହିଁ । ମାତ୍ର ଦେଶ ମିଶ୍ରଣ ଆନ୍ଦୋଳନର ଏହା ଯେ ଗୋଟାଏ ସୋପାନ ଏବଂ ଅପରିହାର୍ଯ୍ୟ ସୋପାନ ଏହା ବିଚକ୍ଷଣ ବ୍ୟକ୍ତିମାତ୍ରକେ ସ୍ୱୀକାର କରିବେ । ଆଜିକାଲି ତ ଚାରିଆଡ଼େ 'ସର୍ବଦଳ ସମ୍ମିଳନୀ' ହୁରି ଉଠିଅଛି । ଓଡ଼ିଶାରେ ଏପରି ଗୋଟାଏ ଗୁରୁତର ସମସ୍ୟାରେ ସର୍ବଦଳ-ସମ୍ମିଳନୀ ହେବା କ'ଣ ଅସମ୍ଭବ ଏବଂ ଅବାଞ୍ଛନୀୟ ? ଏତେବେଳେ ମଧ୍ୟ ଏଥିପାଇଁ ବିଭିନ୍ନ ଦଳ ପ୍ରଧାନ ବ୍ୟକ୍ତିମାନେ ଉଦ୍ୟୋଗୀ ହୋଇ ବାହାରିପାରିବେ ନାହିଁ ।

ମଧୁସୂଦନ ଯଥାର୍ଥରେ କହିଥିଲେ, "ସଂଗଠନର ଶୃଙ୍ଖଳା ଦୃଷ୍ଟିରୁ କଂଗ୍ରେସ ଅବଶ୍ୟ ଭାଷାସୂତ୍ରରେ ପ୍ରଦେଶ ଗଠନ ନୀତି ଘୋଷଣା କରିଛି । କିନ୍ତୁ ଶାସନ କ୍ଷେତ୍ରରେ ସେପରି ଘୋଷଣାର କୌଣସି ଅର୍ଥ ନାହିଁ । ଶାସନ କ୍ଷେତ୍ରରେ ଏ ନୀତି କାର୍ଯ୍ୟକାରୀ ହେଲାବେଳେ ବିହାର, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଆଉ ବଙ୍ଗଳାର କଂଗ୍ରେସ ନେତାମାନେ ଓଡ଼ିଶା ଦାବିର ବିରୋଧ କରିବେ । ସେଥିରେ ମୁଁ ନିଃସନ୍ଦେହ । ୧୯୦୩ ସାଲ ମାନ୍ଦ୍ରାଜ ଅଧିବେଶନ କଥା ମୋ ମନରୁ ପାଶୋରି ଯାଇନାହିଁ । କଂଗ୍ରେସ ସହିତ ଉତ୍କଳ ସମ୍ମିଳନୀର ବିରୋଧ ଏଇଠାରେ ଏଇଥିପାଇଁ ।"

ବିଶ୍ୱନାଥ ଯଦି ଆଜି ବିସ୍ମୃତ, ତାହା କେବଳ ରାଜନୀତିଆଙ୍କ ପାଇଁ । ସେତେବେଳେ ସେ ଯଦି ଆଜିର ରାଜନୀତିଆ ସୃଷ୍ଟିକାରୀ ଦଳ ସହିତ ଯୋଗ

ଦେଇଥାଆନ୍ତେ, ତାହାହେଲେ ତାଙ୍କ ନାମରେ କେତେ ଯେ ରାସ୍ତାଘାଟ, ପୋଲ ଇତ୍ୟାଦି ଉତ୍ସର୍ଗୀକୃତ ହୋଇଥାନ୍ତା, ତା'ର ହିସାବ କରିବା କଠିନ ହେଉଥାନ୍ତା । ମାତ୍ର ସମସ୍ତ ବାସ୍ତବବାଦୀ ଏଭଳି ନେତା ହୋଇପାରନ୍ତି ନାହିଁ ।

ରାଜନେତାଙ୍କ କଥା ଛାଡ଼ନ୍ତୁ, ସାମାନ୍ୟ ଉପାଧି ପାଇଁ କେତେବାଟରେ ଲୋକେ ଯାଉଛନ୍ତି ଆଜିକାଲି ଦିନରେ । କେତେଜଣ ବିଶ୍ୱନାଥଙ୍କ ପରି 'ରାୟବାହାଦୁର' ଭଳି ଉପାଧି ବର୍ଜନ କରିଛନ୍ତି ? ଖୁବ୍ ନଗଣ୍ୟ । ତେଣୁ ସେ ବିସ୍ମରଣରେ ରହିବା ସ୍ୱାଭାବିକ ।

ଯଦି ଆଜିକାର ରାଜନୀତି କରୁଥିବା ନେତାମାନେ ଦେଶ, ଜାତି ଓ ଭାଷାର ମର୍ଯ୍ୟାଦା ଦେବାକୁ ଚାହାନ୍ତି, ସେମାନେ ଅନ୍ତତଃ ୪ ବିଶ୍ୱନାଥ କରଙ୍କ ଭଳି ବାସ୍ତବବାଦୀ ହୁଅନ୍ତୁ ଓ 'କୋଡ଼ିକୁ କୋଡ଼ି କହିବା'ରେ ସାହସୀ ହୁଅନ୍ତୁ । ତୈଳ ମର୍ଦ୍ଦନରେ ଧ୍ୟାନ ଦେଇ ଅପାତ୍ରରେ ଧନ୍ୟବାଦ ଅର୍ପଣ କରନ୍ତୁ ନାହିଁ ।

ପରିଶେଷରେ ଏହି ପୁସ୍ତକର ସଂଯୋଜକ ହିସାବରେ ମୋର କେବଳ ଏତିକି ଅଭିଜ୍ଞତା ହେଲା ଯେ, ବରପୁତ୍ରମାନଙ୍କ ବାର୍ଷିକ ସ୍ମୃତିଚାରଣ ସମୟରେ ଆମେ ସେମାନଙ୍କ ପାଇଁ ବହୁତ କିଛି କରିବାରେ ଇଚ୍ଛା ପ୍ରକାଶ କରିଥାଉ । ମାତ୍ର ପ୍ରକୃତ ପକ୍ଷରେ କାଣିଚାଏ ମଧ୍ୟ ସେଥିରୁ ହୁଏନାହିଁ । ମୋର ଏକଥା ଲେଖିବାର ଯାଥାର୍ଥ୍ୟ, ଏହି ପୁସ୍ତକର ପ୍ରକାଶିକ୍ କ ତାଙ୍କ 'ଶ୍ରଦ୍ଧାଞ୍ଜଳି'ରେ ପ୍ରକାଶ କରିଛନ୍ତି । ସେ ଯାହାହେଉ, ଏହି ପୁସ୍ତକର ପ୍ରକାଶନରେ ମୋର ଅଗ୍ରଜ ଶ୍ରୀଯୁକ୍ତ ରଜତ କୁମାର କର, ବାଗ୍ମୀ ବିଶ୍ୱନାଥ କରଙ୍କ ପରିବାର ସହିତ ସବୁ ଦୃଷ୍ଟିରୁ ଜଡ଼ିତ ଥିବାରୁ ତାଙ୍କରି ନିକଟରେ ହିଁ ଏହି ସଂସ୍କାରକ ସାହିତ୍ୟଗୁରୁଙ୍କ ଦୁଃଷ୍ପ୍ରାପ୍ୟ 'ଆତ୍ମଚରିତ' ହିଁ ମିଳିପାରିଥିଲା ଓ ଦୁର୍ଦ୍ଦମନୀୟ ପ୍ରଚଣ୍ଡ ବାକ୍‌ପଟୁ 'ସୁବାର୍ତ୍ତା'ର ସମ୍ପାଦକ ଆୟୁଷ୍ମାନ୍ ପ୍ରଦ୍ୟୁମ୍ନଙ୍କ ଦୃଢ଼ତା ହେତୁ ତାହାର ପୁନରୁଦ୍ଧାର ହୋଇଥିଲା ଓଡ଼ିଆ ସାହିତ୍ୟର ତ୍ରାଣକାରୀ ସଂସ୍ଥା 'ଓଡ଼ିଶା ସାହିତ୍ୟ ଏକାଡେମୀ'ର ତତ୍କାଳୀନ ମୁଖ୍ୟଙ୍କ ନିକଟରୁ । ତେଣୁ ଏହି ଆତ୍ମଚରିତର ନବକଳେବରର ହେତୁ ତଥା ମୂଳାଧାର ହେଉଛନ୍ତି ମୋର ଅଗ୍ରଜ 'ରଜତନା' ଓ ପ୍ରକାଶକ 'ଶ୍ରଦ୍ଧେୟ ପ୍ରଦ୍ୟୁମ୍ନ' । ସଂଯୋଜକ ଭାବରେ ଯାହା ବା ମୁଁ କରିଛି, ତାହା କେବଳ 'ରଜତନା'ଙ୍କ ତାଡ଼ନାରୁ ତାଙ୍କ ସସ୍ନେହ ଆଶୀର୍ବାଦରୁ ।

*"ଜୟ ଜଗନ୍ନାଥ"* *"ବନ୍ଦେ ଉତ୍କଳ ଜନନୀ"*



# ପ୍ରକାଶକଙ୍କ ଶ୍ରଦ୍ଧାଞ୍ଜଳି



ପ୍ରଦ୍ୟୁମ୍ନ ଶତପଥୀ

ଭି.ଆଇ.ଏମ୍.-୧, ଶୈଳଶ୍ରୀବିହାର
ଭୁବନେଶ୍ୱର - ୭୫୧ ୦୨୧

# ସଂସ୍କାରକ
# ବାଗ୍ମୀ ବିଶ୍ୱନାଥ କର

ହଜାର ହଜାର ବର୍ଷ ଧରି ରୁଢ଼ିମନ୍ତ ସାମାଜିକ ବ୍ୟବସ୍ଥାରେ ପ୍ରବାହିତ ପ୍ରଖର ସ୍ରୋତର ପ୍ରତିକୂଳ ସନ୍ତରଣକାରୀମାନଙ୍କ ସଂଖ୍ୟା ସୀମିତ ହୋଇପାରେ; ମାତ୍ର ସେମାନେ ହିଁ ଇତିହାସର ସ୍ୱର୍ଣ୍ଣାଭ ପୃଷ୍ଠାର ମହାନାୟକ। କାଳର କରାଳ ଆକ୍ରମଣ ଓ ଚକ୍ରାନ୍ତ କୌଣସି ସମୟରେ ସେମାନଙ୍କୁ କରିପାରିନାହିଁ ମସୀଲିପ୍ତ। ସ୍ରୋତର ଅନୁକୂଳରେ ଭାସମାନ ପଚମାନ ଶବର ଗତି ସର୍ବଦା ପ୍ରତିକୂଳ ବିଶ୍ୱଶ୍ରେଷ୍ଠ ସନ୍ତରଣକାରୀର ଗତିଠାରୁ କାହିଁ କେତେଗୁଣ ଅଧିକ, ଏହା ସର୍ବଜନବିଦିତ। ମାତ୍ର ତଫାତ୍, 'ଶବ' ଏବଂ 'ଶିବ' ଭଳି, ଆଉ ଏଥିରେ ଗୋଟିଏ 'ଶବ' ଓ ଅନ୍ୟଟି 'ଶବବାହକ'। ଅର୍ଦ୍ଧଚନ୍ଦ୍ର ବିଚ୍ୟୁତ ହେଲେ ହିଁ 'ଶିବ' ହୁଏ 'ଶବ'। ଅତଏବ 'ଚନ୍ଦ୍ର' ଶବ୍ଦ ସହ ଏହି 'ଶବ'ମାନଙ୍କର ଇତିହାସ ଶାଶ୍ୱତ ଓ ସ୍ଥାୟୀ ଭାବରେ ପ୍ରତିଷ୍ଠିତ। ଆଜି ନ ହେଲେ କାଲି ହିଁ ସମାଜ ତାଙ୍କୁ କରିଥାଏ ମୂଲ୍ୟାଙ୍କନ, ପିଢ଼ି ପରେ ପିଢ଼ି ତାଙ୍କୁ କରିଥାଏ ମାର୍ଗ ପ୍ରଦର୍ଶକ ବିଶେଷଣରେ ନିରୂପିତ, ନତୁବା ଦେଇଥାଏ ନରରୂପୀ ଦେବତାର ଆସନ। ପୂଜ୍ୟପୂଜା ସଂସ୍କୃତି ଆଧାରରେ ସ୍ମୃତିଚାରଣ ସଭା ଓ ଆଲୋଚନାଚକ୍ରର ଆୟୋଜନ କରି ତାଙ୍କର ଆଦର୍ଶ, ବ୍ୟକ୍ତିତ୍ୱ, ସାମାଜିକ ଦାନ, ନିଜର ତଥା ନିଜ ପରିବାରର ସମସ୍ତ ସୁଖ ସ୍ୱାଚ୍ଛନ୍ଦକୁ ଜଳାଞ୍ଜଳି ଦେଇ ସେବା, ଅପରର ଦୁଃଖରେ ବିଗଳିତ ହୃଦୟର ଅକୃତ୍ରିମ କରୁଣା ପ୍ରଦର୍ଶନର ଇତିହାସକୁ ପଣ୍ୟକରି ସାମାଜିକ ଉତ୍ତରାଧିକାରୀମାନେ ଯଶୋ

ଦେହରେ ତାଙ୍କୁ କରିଥାନ୍ତି ଚିର ଆୟୁଷ୍ମାନ। ଜୀବନବ୍ୟାପି ସଂଗ୍ରାମ, ସଂଘର୍ଷ, ନିର୍ଯ୍ୟାତନା, କଷଣ, ଶୋଷଣ, ମରଣାତ୍ମକ ଆକ୍ରମଣ, ଅକାଳମୃତ୍ୟୁକୁ ଆପଣେଇ ଥିବା ରକ୍ତମାଂସଧାରୀ ତାଙ୍କର ଅବର୍ତ୍ତମାନରେ ହୁଅନ୍ତି ସତ୍ୟ, ଶିବ, ସୁନ୍ଦର। ମାତୃଭୂମି, ମାତୃଭାଷାକୁ ସର୍ବୋଚ୍ଚ ସମ୍ମାନ ଦେଇ ସାମାଜିକ ମାନବକଲ୍ୟାଣୀ ପରମ୍ପରାକୁ ଉଚ୍ଚାସନ ଦେଇ ଘୃଣ୍ୟ ମାନବତା ବିରୋଧୀ, ଜନାତ୍ୟାଚାରିତ ଗୁଡ଼ିମନ୍ତ ପରମ୍ପରା ବିରୋଧରେ ଭାଷଣ ଓ ଆଚରଣର ସମନ୍ୱୟ ଭିତ୍ତିଭୂମିରେ ଜନଚେତନା ଜାଗ୍ରତ କରାଇବା ସହ ଅସି ଓ ମସୀ ଉତ୍ତୋଳନ କରିଥିବା ଦିବଙ୍ଗତ ଦିବ୍ୟାତ୍ମାମାନଙ୍କୁ ପଢ଼ିବାର ଜିଗୀଷାର ଫଳଶ୍ରୁତି ଆମକୁ ପ୍ରଚୋଦିତ ତଥା ପ୍ରଭାବିତ କରିଥିଲା, ସ୍ୱତଃ ମଥାନତ କରିବାକୁ ପ୍ରତ୍ୟେକ ଓଡ଼ିଆପ୍ରାଣ, ମାନବତାବାଦୀ, ସଂସ୍କାରଧର୍ମୀଙ୍କ ପ୍ରାତଃ ସ୍ମରଣୀୟ ବାଗ୍ମୀ ବିଶ୍ୱନାଥ କରଙ୍କ ଅମ୍ଳାନ ସ୍ମୃତି ନିକଟରେ। ବିଶେଷକରି ଆମର ଅଗ୍ରପୂଜ୍ୟ, ଆଦର୍ଶ, ପିତୃପ୍ରତିମ ତଥା ଯାହାଙ୍କର ଆଶୀର୍ବାଦର ବଜ୍ରହସ୍ତ ଆମର ମଥାପରେ ଚିରସ୍ଥାୟୀଭାବେ ସ୍ଥାପିତ, 'ସୁବାର୍ତ୍ତା ଗୌରବ' ପୂଣ୍ୟାତ୍ମା ଡାକ୍ତର କମଳାକାନ୍ତ କର ମହାଭାଗଙ୍କ ପୂର୍ବଜ ବାଗ୍ମୀ ବିଶ୍ୱନାଥ କରଙ୍କର ଓଡ଼ିଆ ଭାଷା ଜନନୀଙ୍କୁ ଜାତୀୟ କ୍ଷେତ୍ରରେ ମହିମା ବିମଣ୍ଡିତ କରାଇଥିବାର ରାଶିରାଶି ଉଦାହରଣ ଏବଂ ଦୁର୍ଭାଗ୍ୟ ସମ୍ଭୂତ ଅନାଲୋଚିତ ତ୍ୟାଗପ୍ଲୁତ ଏବଂ ସଂସ୍କାରଧର୍ମୀ ଭାଷଣ ଓ ଆଚରଣର ଜ୍ଞାତବ୍ୟ ପ୍ରମାଣିକ ତଥ୍ୟ, ଆମକୁ ପ୍ରଚୋଦିତ କରିଛି, ତାଙ୍କର ଅବର୍ତ୍ତମାନର ୭୫ ବର୍ଷର ସନ୍ଧିକ୍ଷଣରେ ଅବଲୁପ୍ତ ସ୍ୱର୍ଣ୍ଣାଭ ଇତିହାସକୁ ପାଠକାର୍ପଣ କରିବା ପାଇଁ। ଓଡ଼ିଶା ବ୍ୟତୀତ ବିଶ୍ୱରେ ଏଭଳି କୌଣସି ରାଜ୍ୟ ନାହିଁ, ଯେଉଁଠି ତା'ର ଭାଷା ଜନନୀ ହୁଅନ୍ତି ବାରବାର ଲାଞ୍ଛିତ, ତା'ର ସୀମା ହୁଏ ଅସୁରକ୍ଷିତ, ସେହି ମାଟିର ସନ୍ତାନମାନେ ନିଜମାଟିରେ ଭୋଗନ୍ତି ନିର୍ବାସନର ଦଣ୍ଡ, ଯାହାର ସାହିତ୍ୟ ହୁଏ ଅହିତ, କଳା ହୁଏ କଳଙ୍କିନୀ, ସଂସ୍କୃତି ହୁଏ ଗଣିକାଧର୍ମୀ, ଦେବୀ ବୀଣାପାଣୀ ସରସ୍ୱତୀ ହୁଅନ୍ତି ପ୍ରଶାସକାନୁରକ୍ତା, ସାମାଜିକ ସମ୍ମାନ ହୁଏ ଲବିମଣ୍ଡିତ, ପ୍ରତିଭାନାସ୍ତି ଅଥଚ ଯଶକାଙ୍ଗାଳମାନଙ୍କ ଦ୍ୱାରା ସାମାଜିକ କ୍ଷେତ୍ର ସମୂହର ଆଗଧାଡ଼ି ସବୁ ହୁଏ ଜବରଦଖଲ।

ଏ ଜାତିର ଦୁର୍ଭାଗ୍ୟ ଯେ, ଯିଏ ଓଡ଼ିଆ ଭାଷାପ୍ରେମୀ, ଜନବାଦୀ ସାରସ୍ୱତ ସାଧକ, ସିଏ ହିଁ ହୁଅନ୍ତି ଅନାଲୋଚିତ ଅଥଚ ଭାଷାଦ୍ରୋହୀ, କୃତ୍ରିମ ସାରସ୍ୱତ ସାଧକ, ଇତର ଭାଷାସ୍ରଷ୍ଟ ସୃଷ୍ଟିକୁ ନକଲ କରିବା କଳାଧୂରୀଣମାନେ ହୁଅନ୍ତି ସାହିତ୍ୟର ବଡ଼ପଣ୍ଡା। ସମଗ୍ର ବିଶ୍ୱରେ ଭାଷାଭିତ୍ତିକ ରାଜ୍ୟ ଗଠନରେ ଆଦ୍ୟ ବିଶେଷଣରେ ବିଭୂଷିତ ରାଜ୍ୟର

ସାହିତ୍ୟ ଏକାଡେମୀ ତା'ର ଗଠନର ପ୍ରାକ୍‌କାଳରୁ ସଂସ୍କୃତି ବିଭାଗର ଏକ ଲୋମଛଡ଼ା ଲାଙ୍ଗୁଡ଼ ହୋଇ କ୍ଷମତା ରାଜନୀତିର ନିୟନ୍ତ୍ରଣରେ ରହିଆସିଥିବାରୁ, ବାଗ୍ମୀ ବିଶ୍ୱନାଥ କରଙ୍କ ଭଳି ପ୍ରତିଭାଧରମାନଙ୍କୁ ପରବର୍ତ୍ତୀ ପିଢ଼ିମାନଙ୍କ ପାଖରେ ସଠିକ୍ ଭାବରେ ରଖିବାର ମୌଳିକ କର୍ତ୍ତବ୍ୟରୁ ହେଲା ବିଚ୍ୟୁତ। ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଆସନ ସଂପ୍ରତି ରିକ୍ତ। ବୋଧହୁଏ, ସରକାରଙ୍କ ଭାଷାରେ ଓଡ଼ିଶାରେ ସେଭଳି ଜଣେ କେହି ସାରସ୍ୱତ ସାଧକ ନାହାନ୍ତି, ଯିଏ ଏଭଳି ଆସନର ହେବେ ଆସୀନ। ପ୍ରାକ୍ତନ ସଭାପତି ତଥା ବିଶିଷ୍ଟ ମାନବବାଦୀ କବି ଡଃ ହୁସେନରବି ଗାନ୍ଧୀ ଏକାଡ଼େମୀର ଉପସଭାପତି ଥିବାବେଳେ ବାଗ୍ମୀ ବିଶ୍ୱନାଥ କରଙ୍କ ସ୍ମୃତିଚାରଣ ସଭାରେ ପ୍ରତିଶ୍ରୁତିବଦ୍ଧ ଥିଲେ, ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରାକ୍ତନ କୁଳପତି ବରେଣ୍ୟ ଚିନ୍ତାମଣି ଆଚାର୍ଯ୍ୟ ମହୋଦୟଙ୍କ ୧୯୫୩ ମସିହାର ସୃଷ୍ଟି "ଆତ୍ମ ଚରିତ ସମ୍ବଳିତ ପତ୍ର" କ୍ଷୁଦ୍ର ପୁସ୍ତକକୁ ପୁନଃମୁଦ୍ରଣ କରିବାପାଇଁ; ଓଡ଼ିଶା ସାହିତ୍ୟ ଏକାଡେମୀର ମାସିକ ପତ୍ରିକା "କୋଣାର୍କ"ରେ ଧାରାବାହିକ ଭାବେ ପ୍ରକାଶନ ପାଇଁ। ଗାନ୍ଧୀ ଉପସଭାପତିରୁ ସଭାପତି ହେଲେ, କାର୍ଯ୍ୟକାଳ ଶେଷ କରି ବିଦାୟ ନେଲେ, ମାତ୍ର ତାହାର ପୁନଃ ପ୍ରକାଶନ ହେଲାନି ସମ୍ଭବ। ଡଃ ଗାନ୍ଧୀ ଫେରାଇଦେଲେ ପାଣ୍ଡୁଲିପି। "ସୁବାର୍ତ୍ତା" ପାଇଁ ଏହା ଥିଲା ଏକ ଆହ୍ୱାନ। ଡାକ୍ତର କର ମହୋଦୟଙ୍କର ଆଶୀର୍ବାଦ ସହ ଦିବ୍ୟାତ୍ମା ବିଶ୍ୱନାଥ କର ମହାଭାଗଙ୍କ ଅନ୍ୟତମ ଉତ୍ତରାଧିକାରୀ, ବିଶେଷକରି ତାଙ୍କର ଅଗ୍ନିତେଜସ୍ୱିନୀ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣର ପ୍ରଭାବରେ ବହୁଳଭାବେ ପ୍ରଭାବିତ ବରେଣ୍ୟ ରଜତ କୁମାର କରଙ୍କ ପ୍ରେରଣା, 'ସୁବାର୍ତ୍ତା ପ୍ରକାଶନୀ' ପାଇଁ ହୋଇଛି ମହାର୍ଘ ପଣ୍ୟ। ୧୯୭୪ ମସିହାରେ ଆମେ ମହାବିଦ୍ୟାଳୟର ଛାତ୍ର ଥିଲୁ, ସେତେବେଳେ ଜଣେ ମଣିଷ ଅନ୍ୟ ଜଣେ ମଣିଷକୁ କାନ୍ଧେଇ କରି ପାଲିଙ୍କି, ସବାରୀରେ ବୋହିବାର ବିରୋଧ କରି ଏକ ଆନ୍ଦୋଳନ ଗଢ଼ିତୋଳି ଯେଭଳି ସ୍ୱାଧୀନତାର ୨୭ ବର୍ଷ ପରେ ହୋଇଥିଲୁ ଲହୁଲୁହାଣ, ସାମାଜିକ ବାସନ୍ଦର ସମ୍ମୁଖୀନ; ୧୯୯୦ ମସିହାରେ ମଣ୍ଡଳ କମିଶନ ସୁପାରିଶ ସପକ୍ଷ ଆନ୍ଦୋଳନରେ ସଂପୃକ୍ତ ହୋଇ କ୍ଷମତା ରାଜନୀତି ପ୍ରକୋଷ୍ଠରୁ ହୋଇଗଲୁ ବହିଷ୍କୃତ ଏବଂ ଏହି ମାନସିକତାରୁ ଅଦ୍ୟାବଧି ଉଚ୍ଚବର୍ଣ୍ଣବାଦୀ, ରୁଢ଼ିମନ୍ତ ପରମ୍ପରାବାଦୀମାନଙ୍କ କର୍ତ୍ତୃତ୍ୱାଧୀନ ସମାଜରେ ନିର୍ଯ୍ୟାତିତ, ଅଧିକାରରୁ ବଞ୍ଚିତ ଏବଂ ସେମାନଙ୍କର ଚକ୍ରାନ୍ତର ଶିକାର ହୋଇ ଆସୁଅଛୁ । ଆମର ଏହି ଅନୁଭୂତିକୁ ଆଧାରକରି ଆମେ ଯେତେବେଳେ ଊନବିଂଶ ଶତାବ୍ଦୀର ରୁଢ଼ିମନ୍ତ ସାମାଜିକ ଓ ଲୋକଚରିତ୍ରକୁ

ଆଖି ଆଗକୁ ଆଣି ବାଗ୍ମୀ ବିଶ୍ୱନାଥ କରଙ୍କର ଜୀବନୀକୁ ପଢୁ, ସେତେବେଳେ ଅନୁଭବ କରିପାରୁଛୁ ଯେ କିଭଳି ଅକଥନୀୟ ଅତ୍ୟାଚାର, ସାମାଜିକ ବାସନ୍ଦର ଲହୁଲୁହାଣ ହୋଇଥିବେ ସେ ସମୟରେ ଏହି ଦିବ୍ୟାତ୍ମା । ସଂକ୍ଷିପ୍ତ ଭାବେ ପ୍ରକାଶିତ ତାଙ୍କର ଜୀବନାଲେଖ୍ୟ ପଢ଼ିବା ପରେ ଆମର ଦୃଢ଼ ମତ ହେଲା ଯେ, ଦିବ୍ୟାତ୍ମାଙ୍କୁ ସମର୍ପିତ ବିଶେଷଣ ସମୂହ ଅପୂର୍ଣ୍ଣ। ବିହାର-ଓଡ଼ିଶା ବିଧାନ ପରିଷଦର ପ୍ରଥମ ଅଧିବେଶନରେ ପ୍ରଥମଥର ପାଇଁ ଏକ ଆଞ୍ଚଳିକ ଭାଷା ତଥା ନିଜ ମାତୃଭାଷାରେ ବକ୍ତବ୍ୟ ରଖିବାରେ ଏହି ପ୍ରଚଣ୍ଡ ସ୍ୱାଭିମାନୀ ପୁରୁଷଙ୍କ ଭାଷା ଜନନୀଙ୍କ ପ୍ରତି ଯଥୋଚିତ ସମ୍ମାନ ପ୍ରଦର୍ଶନ, ଏତାଦୃଶ କାର୍ଯ୍ୟର ବିରୋଧୀମାନଙ୍କୁ ବୌଦ୍ଧିକ ସଂଘର୍ଷରେ ମସୀଲିପ୍ତର ଇତିହାସଠାରୁ ତାଙ୍କର ଗୁରୁ ଗମ୍ଭୀର ଜନଚେତନା ଜାଗ୍ରତକାରୀ, ବୈପ୍ଲବିକ ଧର୍ମୀ ଅଗ୍ନିଗର୍ଭା ଭାଷଣ, ଗତିଶୀଳ ନବ୍ୟ ସାହିତ୍ୟର ଯୁଗସ୍ରଷ୍ଟା, ନୂତନତମ ଗଦ୍ୟଶୈଳୀର ପ୍ରାଣ ପ୍ରତିଷ୍ଠାତା, ବାଗ୍ମୀ ସମ୍ମାନରେ ଜନସମ୍ମାନ ଆଦି ବହୁବିଧ ସମ୍ମାନ ବ୍ୟତିରେକେ ଆମ ଭାଷାରେ ତାଙ୍କ ପାଇଁ ଉପଯୁକ୍ତ "ସଂସ୍କାରକ ବିଶ୍ୱନାଥ କର" ସମ୍ମାନ ହିଁ ସର୍ବାଦୌ ପ୍ରଯୁଜ୍ୟ। ଏପରିକି ଜାତି, ଧର୍ମ ଓ ବର୍ଣ୍ଣକୁ କେବଳ ଆଧାର କରି ନୁହେଁ, ସମଗ୍ର ସାମାଜିକ ବ୍ୟବସ୍ଥାରେ ପାତାଳ ଭେଦି ରୁଢ଼ିମନ୍ତ ଅପସଂସ୍କୃତି ବିରୋଧରେ ତାଙ୍କର ସଂସ୍କାରଧର୍ମୀ ମାନସିକତା ଓ ତତ୍‌ସଂପର୍କିତ ଆଚରଣଗତ ସଂଘର୍ଷର ଇତିହାସ ବ୍ୟାପକ। ବିଶେଷକରି ଉଚ୍ଚକୁଳ, ବର୍ଣ୍ଣ ସମ୍ଭୂତ ଏହି ଦିବ୍ୟାତ୍ମାଙ୍କର ଉଚ୍ଚବର୍ଣ୍ଣବାଦ ବିରୋଧରେ ସଂଘର୍ଷର କରୁଣ କାହାଣୀ ପାଠ କଲେ ଏବେବି ପାଠକ ହୁଏ ରୋମାଞ୍ଚିତ। ସମତା ମହାମନ୍ତ୍ରରେ ଅଭିମନ୍ତ୍ରିତ ଦିବ୍ୟାତ୍ମା କରଙ୍କ ନାରୀ ସମାଜର ସକାରାତ୍ମକ ଅଧିକାର ପ୍ରତିଷ୍ଠା ପାଇଁ ଅହରହ ସଂଗ୍ରାମ, ଧର୍ମଧ୍ୱଜାଧାରୀମାନଙ୍କ ସ୍ୱାର୍ଥାନ୍ୱେଷୀ ଅତ୍ୟାଚାର, ବଡ଼ପିଣ୍ଡାସୀନମାନଙ୍କ ଛଳନାଶ୍ରିତ ଆଚରଣ, ସାହିତ୍ୟକୁ ରାଜନିୟନ୍ତ୍ରଣରୁ ମୁକ୍ତ, ସାର୍ବଜନୀନ ଶିକ୍ଷା, ଗଣମାଧ୍ୟମର ପୃଷ୍ଠପୋଷକତା ଆଦି ବହୁବିଧ ଉଦାହରଣୀୟ ଅବଦାନ ପାଇଁ ସେ ନିଶ୍ଚିତ ହେବେ ଚିର ସ୍ମରଣୀୟ । ଅନ୍ଧାନୁସରଣ, ବାହ୍ୟାଡ଼ମ୍ବରକୁ ତ୍ୟାଗ କରି ଜୀବନପାଇଁ, ସମାଜପାଇଁ ସେ ଥିଲେ ବ୍ୟତିକ୍ରମ। ଇତିହାସ କୁହେ—ଏହି ବ୍ୟତିକ୍ରମୀମାନେ ହିଁ ସମାଜର ମୋଡ଼ ବଦଳାଇଥାଆନ୍ତି। ସ୍ୱକୀୟ ସାଧନା, ତ୍ୟାଗ ଓ ଆଦର୍ଶ ବଳରେ ନରଦେହରୂପୀ ଜଣେ ସାଧାରଣ ବ୍ୟକ୍ତି ହୋଇଥାନ୍ତି ଅସାଧାରଣ ଓ ଅନନ୍ୟ। ସେହି ସାଧାରଣ ମଣିଷଟି ଭିତରେ କିପରି ଏକ ଅସାଧାରଣ ବ୍ୟକ୍ତିସତ୍ତା ଆତ୍ମଗୋପନ କରିଥାଇପାରେ, ଆଉ ଦୁର୍ଦ୍ଦମନୀୟ ସଙ୍କଳ୍ପର ଆଗ୍ନେୟ ସ୍ପର୍ଶରେ ହିଁ

ତାଙ୍କର ଆତ୍ମଜାଗରଣ ଓ ପରିପ୍ରକାଶ ସମ୍ଭବ ହୋଇପାରେ—ଏ ସତ୍ୟର ପ୍ରକୃଷ୍ଟ ଉଦାହରଣ ଥିଲେ ସମାଜସଂସ୍କାରକ ବାଗ୍ମୀ ବିଶ୍ୱନାଥ କର। ଧୂଳି ଧୂଷରିତ ଏହି ଧରଣୀ ସାମାନ୍ୟ ଶିଳାଖଣ୍ଡ, କିନ୍ତୁ ସେ ଥିଲେ ସୀମାଦ୍ରୀ ଓ ହିମାଦ୍ରୀଠାରୁ ଅନେକ ଉଚ୍ଚ, ଅନେକ ବିଶାଳ ଓ ଅନେକ ମହାନ ଧରାଧର। ଅଟଳ ଓ ଅଟଳ ପର୍ବତର କଠିନ ଓ କର୍କଶପ୍ରସ୍ତର ଆସ୍ତରଣର ଅନ୍ତରାଳରେ ସଦାନୀରା ନିର୍ଝରିଣୀଟିଏ ଲୁକ୍କାୟିତ ଥିବା ପରି ବାହାରକୁ ଭାବପ୍ରବଣତାହୀନ, ଋଷିପ୍ରତିମ ଅବୟବ, ଅତ୍ୟନ୍ତ କଠୋର ଓ ଏପରିକି ନିଷ୍ଠୁର ବୋଲି ପ୍ରତିଭାତ ହେଉଥିବା ଶ୍ରୀଫଳ ଅର୍ଥାତ ନାରୀକେଳଧର୍ମୀ ଏହି ଦିବ୍ୟାତ୍ମାଙ୍କ ହୃଦୟରେ ଆମ ସମାଜର ଗୁଡ଼ିମନ୍ତ ବ୍ୟବସ୍ଥା, ବିଶେଷକରି ଶାସ୍ତ୍ରର ଦ୍ୱାହି ଦେଇ, ଧର୍ମକୁ ଆଖିମିଟିକା ମାରି ବ୍ରାହ୍ମଣେତର ବଂଶଜଙ୍କ ପ୍ରତି ନିଃଶୋଷଣ କରି ଧୋତି-ଚାଦର-ଶାଢ଼ି-ଗାମୁଛା, ଚାଉଳ-ଡାଲି-ପନିପରିବା-ଘିଅ-ଦାନ ଦକ୍ଷିଣାରେ ଘର ଭର୍ତ୍ତି କରୁଥିବା ଫନ୍ଦି ଛଡ଼ା ଠକେଇ କରୁଥିବା ଧର୍ମୀୟ ଠକମାନଙ୍କ ବିରୋଧରେ ତାଙ୍କର ଅଭିଯାନ, ସ୍ୱର୍ଣ୍ଣପ୍ରସବିଣୀ ଅଥଚ ବ୍ରିଟିସ ଉପନିବେଶବାଦୀ ଶାସକର ଶୋଷଣରୁ ଚିରଦୁଃଖିନୀ ଉତ୍କଳସନ୍ତାନମାନଙ୍କ ପାଇଁ, ବଙ୍ଗୀୟ ଚକ୍ରାନ୍ତରେ ଭାଷା ଜନନୀର ଅସ୍ତିତ୍ୱ ବିଲୋପପାଇଁ ତାଙ୍କର ଓଡ଼ିଆ ପ୍ରାଣର ବିଦ୍ରୋହ, ତାଙ୍କୁ ଦେଇଛି ଅନେକ କ୍ଷେତ୍ରରେ "ବିଶେଷଣଭିତ୍ତିକ ସମ୍ମାନ"।

ଏତଦ୍‌ବ୍ୟତୀତ, ସମାଜ ରକ୍ଷକ ଆଖ୍ୟାଧାରୀ, ତକ୍ଷକ ଧର୍ମୀ ସର୍ବ ଭକ୍ଷକ ଶାସ୍ତ୍ରଜ୍ଞମ୍ମନ୍ୟ ବ୍ୟବସ୍ଥାଦାତାମାନଙ୍କ ବିଚିତ୍ର ସ୍ଥାୟୀ ଆଜ୍ଞା ପ୍ରତିଜ୍ଞାକୁ ଚିରି, ଟୁକୁଡ଼ା ଟୁକୁଡ଼ା କରି ବିରୂପା ନଦୀର ଗର୍ଭକୁ ନିକ୍ଷେପ କରିବାର ଇତିହାସ ଆଜି ବି ଅନାଲୋଚିତ। ସାମାଜିକ ଜନଜୀବନରେ ଅଣି ଭାଗରୁ ଉର୍ଦ୍ଧ୍ୱ ଜନସମୁଦାୟଙ୍କ ଦୁଃଖ ଓ ଦୈନ୍ୟର ଭିତ୍ତିଭୂମି ହିଁ ଅସମ ବଣ୍ଟନ, ଆଉ ଧନର ଏହି ଅସମ ବଣ୍ଟନ ମୂଳରେ ଥିବା ଅନ୍ୟାନ୍ୟ ଅନେକ କାରଣ ମଧ୍ୟରୁ ପ୍ରଥମ କାରଣ ହେଉଛି ସାମାଜିକ ବୃଥାଡ଼ମ୍ବର ଓ କେତେକ ବଦ୍ଧମୂଳ ଅନ୍ଧବିଶ୍ୱାସ। ଅତଏବ, ସାମାଜିକ ଜୀବନଚର୍ଯ୍ୟାର ଏହି ବିଷବୃକ୍ଷ ଦ୍ୱୟକୁ ଉପାଡ଼ି ଫିଙ୍ଗି ଦେବାପାଇଁ ତାଙ୍କର ଜୀବନବ୍ୟାପି ଅହରହ ସଂଗ୍ରାମର ଫଳଶ୍ରୁତି ହିଁ ସ୍ୱାଧୀନୋତ୍ତର ୬୨ ବର୍ଷ ତଥା ତାଙ୍କ ସ୍ୱର୍ଗାରୋହଣର ୭୫ ବର୍ଷ ପରେ ସମ୍ୟକ ଭାବେ ହୋଇଛି ପ୍ରତିଫଳନ। ଜାତିବାଦର ମାରାତ୍ମକ ପରିଣାମ ସଂପର୍କରେ ତାଙ୍କର ଯେଉଁ ଧାରଣା ବାଲ୍ୟ ଜୀବନରେ ସୃଷ୍ଟି ହୋଇଥିଲା, ତାହାର ଚିତ୍ର ଛାତ୍ର ଜୀବନରେ ଅତି ସ୍ପଷ୍ଟଭାବେ ଦେଖିସାରିବା ପରେ, ବିଦ୍ରୋହୀ ମନ ଏକ ସମତା ତଥା ଜାତିଭେଦ

ବିବର୍ଜିତ ସମାଜ ଗଠନରେ ହୋଇଥିଲା ବ୍ରତୀ। ଯେଉଁ ସମୟରେ ଦିବ୍ୟାତ୍ମା କର ଏହିଭଳି ମାନସିକତାକୁ ପ୍ରତିଫଳିତ କରିଥିଲେ ଆଚରଣରେ, ସେହି ସମୟରେ ନ ଥିଲେ ମହାତ୍ମା ଫୁଲେ କିମ୍ବା ବାବାସାହେବ ଆମ୍ବେଦକର। ଡକ୍ଟର ଆମ୍ବେଦକର ଅସ୍ପୃଶ୍ୟତା ବିରୋଧରେ ନିଜ ଜୀବନର ଅନୁଭୂତି ଆଧାରରେ ଓ ଦଳିତ ସଂପ୍ରଦାୟରେ ଜନ୍ମିତ ଆଧାରରେ ସମତାର ବାର୍ତ୍ତା ଦେବା ଓ ଜଣେ ଉଚ୍ଚବର୍ଣ୍ଣ ଜାତ ବ୍ୟକ୍ତି ଉଚ୍ଚବର୍ଣ୍ଣବାଦ ତଥା ଉଚ୍ଚପିଣ୍ଡାବାଦ ବିରୋଧରେ ବିଦ୍ରୋହ କରିବା ଭିତରେ ଆକାଶ ପାତାଳ ପ୍ରଭେଦ।

ହିନ୍ଦୁଧର୍ମର କୁସଂସ୍କାର ବିରୋଧରେ ବିଦ୍ରୋହ କରି ଆମ୍ବେଦକର ଧର୍ମ ତ୍ୟାଗକରି ବୌଦ୍ଧଧର୍ମ ଗ୍ରହଣ କରିବାରୁ ଜଣେ ବିଧର୍ମୀର ବିଦ୍ରୋହ ସମାଲୋଚନାର ହୋଇଥିଲେ ଶରବ୍ୟ ଏବଂ ଭାରତକୁ ଖଣ୍ଡ ବିଖଣ୍ଡିତ କରି ପାକିସ୍ଥାନ ଭଳି ଦଳିତସ୍ଥାନ ନାମରେ ଏକ ରାଷ୍ଟ୍ର ଗଠନ କରିବାର ଦାବି ଫଳରେ ସମାଲୋଚକମାନେ ତାଙ୍କୁ ଆକ୍ଷେପ କରିଥିଲେ। ଏକ ନବ୍ୟ ବ୍ରାହ୍ମଣ୍ୟବାଦର ଜନକବୋଲି ନିନ୍ଦା କରିଥିଲେ । ମାତ୍ର ବାଗ୍ମୀ ବିଶ୍ୱନାଥ କର ବ୍ରାହ୍ମ ସମାଜ ସହ ହୋଇଥିଲେ ସଂପୃକ୍ତ ଏବଂ ସମଗ୍ର ଓଡ଼ିଆଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରି ଭାଷାଭିତ୍ତିକ ରାଜ୍ୟ ଗଠନ ଆନ୍ଦୋଳନର ଥିଲେ ପଚ୍ଚପୁରୋଧା। ଇତିହାସର ବିଡ଼ମ୍ବନା ଡଃ ଆମ୍ବେଦକର ହେଲେ ଭାରତରତ୍ନ, ଯୁଗପୁରୁଷ, ରାଷ୍ଟ୍ରୀୟ ସମ୍ମାନାଧିକାରୀ ଓ ସଂପ୍ରତି ଭୋଟବ୍ୟାଙ୍କର ଅମୂଲ୍ୟ ସ୍ମାରକୀ; ମାତ୍ର ବାଗ୍ମୀ ବିଶ୍ୱନାଥ କର, ଜାତୀୟ କ୍ଷେତ୍ର କଥା କିମ୍ବା ପ୍ରାନ୍ତୀୟ କ୍ଷେତ୍ର କଥା କ'ଣ କହିବା, ନିଜ ଜନ୍ମମାଟି ମୂଳବସନ୍ତରେ ମଧ ହେଲେନି ଚିରସ୍ମରଣୀୟ। କର ବଂଶଜମାନଙ୍କ ପୂଜ୍ୟପୂଜା ମାନସିକତା କାରଣରୁ ହୋଇଆସୁଛନ୍ତି କେବଳ ବର୍ଷସ୍ମରଣୀୟ। ଯେଉଁ ସମୟରେ ବରେଣ୍ୟ କର ସାମାଜିକ ମନଗଢ଼ା ବିଧିବିଧାନ ଓ ଆବର୍ଜନା ବହୁଳ ଅବାଞ୍ଛିତ କ୍ରିୟା କଳାପ ସମୂହକୁ ଅତି ନିର୍ଭୀକ ଭାବରେ ଓ କଟୁ ଭାଷାରେ ସମାଲୋଚନା କରି ଜନ ଚେତନା ଜାଗ୍ରତ କରାଉଥିଲେ, ସେହି ସମୟରେ ବ୍ରାହ୍ମଣତ୍ୱର ବାହାସ୍ଫୋଟକାରୀ ଗୋଦରଗୋଡ଼ିଆ ବ୍ୟବସ୍ଥାପକ ପଣ୍ଡିତ ଓ କର୍ମକାଣ୍ଡ ଜ୍ଞାନର ଆସ୍ଫାଳନାକାରୀ, ଯଜମାନ ଶୋଷଣକାରୀ, ବୁଜୁଳି-ଭାରାକ୍ରାନ୍ତ-ସ୍କନ୍ଧ ପୁରୋହିତ ବର୍ଗଙ୍କ ଚକ୍ରାନ୍ତର ଶିକାର ହୋଇ ନିଜ ଘରେ ମଧ ଭୋଗିଥିଲେ ନିର୍ବାସନ ଦଣ୍ଡ ଏବଂ କୁଷ୍ଠ ରୋଗାକ୍ରାନ୍ତଙ୍କୁ ପ୍ରଦର୍ଶିତ ଆଚରଣ ପରି ସିଏ ପାଇଥିଲେ ତତୋଧିକ ତିରସ୍କାର। ନିଜ ଘରେ ବସି ଖାଇବାର ଅଧିକାର ମଧ ନ ଥିଲା ତାଙ୍କର। ବାଡ଼ିପଟେ କଦଳୀ ପତ୍ରରେ ତାଙ୍କୁ ନ ଛୁଇଁ ପରସା ଯାଇଥିଲା ଖାଦ୍ୟ ଯେଭଳି ଜଣେ ବ୍ୟକ୍ତିଙ୍କୁ, ଯାହାଙ୍କୁ

ସେତେବେଳେ ଦେଶର ବୌଦ୍ଧିକ ଜଗତର ମୁକୁଟ ବିହୀନ ସମ୍ରାଟ ଭାବେ ଦିଆଯାଇଥିଲା ସମ୍ମାନ । ତାଙ୍କ ଭାଷାରେ ବ୍ରାହ୍ମଣ ବଂଶରେ ଜନ୍ମ ପାଇଗଲେ କ'ଣ ଜଣେ ବ୍ରାହ୍ମଣ ପଦବାଚ୍ୟ ହୋଇଯାଏ ? "ଜନ୍ମନା ଜାୟତେ ଶୂଦ୍ର, ସଂସ୍କାରାତ୍ ଦ୍ୱିଜ ମୁଚ୍ୟତେ, ବେଦାଭ୍ୟାସାତ୍ ଭବେତ ବିପ୍ରୋ, ବ୍ରହ୍ମ ଜାନାତି ବ୍ରାହ୍ମଣଃ ।" "ସତ୍ୟଂ ଜ୍ଞାନ ମନନ୍ତଂ ।" ବ୍ରହ୍ମଙ୍କର ବିନ୍ଦୁ ବିସର୍ଗ ଧାରଣା ସୁଦ୍ଧା ଯେଉଁମାନଙ୍କର ନାହିଁ, ଦିନ ୨ଘଣ୍ଟା ସମୟରେ ଗାଁ ପୋଖରୀରେ ଗାଧୋଇ, ଉଚ୍ଚ ଗଳାରେ ବ୍ରାହ୍ମଣେତରମାନଙ୍କୁ ଶୁଣେଇବା ପାଇଁ ଛଳନାଶ୍ରିତମାନେ କାକସ୍ନାନ କଲେ ମଧ୍ୟ ଯେଉଁମାନେ "ଜବାକୁସୁମ ସଂକାଶଂ କାଶ୍ୟପେୟଂ ମହାଦ୍ୟୁତିଂ, ଧ୍ୱାନ୍ତାରୀ ସର୍ବ ପାପଘ୍ନଂ ପ୍ରଣତୋସ୍ମି ଦିବାକରମ୍" ଭଳି ଉଦିତ ସୂର୍ଯ୍ୟଙ୍କୁ ପ୍ରଣାମ କରିବାର ମନ୍ତ୍ର ଉଚ୍ଚାରଣ କରି ଦିଗ୍‌ବିଦିଗ ଫଟେଇ ପକାନ୍ତି, ସେହି ସୂତ୍ରଗୁଚ୍ଛସର୍ବସ୍ୱମାନଙ୍କୁ କେଉଁ ବିବେକବନ୍ତ ବ୍ୟକ୍ତି ବ୍ରାହ୍ମଣ ବୋଲି ସ୍ୱୀକାର କରିବ ? ଉତ୍କଳର ପ୍ରଥିତଯଶା ପ୍ରେମିକ କବି ଡଃ. ମାୟାଧର ମାନସିଂହଙ୍କ ଭାଷାରେ–

"ନର ଦେହ ହୀନ ମୃତ୍ତିକା ନୁହେଁ,
ନାରାୟଣୀ ତା'ର ଜୀବନରସ,
ମହା ଚେତନାର ଅଂଶ ସେ ଏକ
ବିକାଶ ପାଇଁକି ଶରୀର ବଶ ।

ଖୋଲିଲେ କବାଟ ଉଠିବ ଦେବତା
ଉଠିବ ପରାଣ ପୂଣ୍ୟ ପୁରି
ଅମୃତ ସେହୁ ଚିହ୍ନି ନିଜରେ
ନ ଡ଼ରିବ କା'ର କମାଣ ଗୁଳି ।।"

ସ୍ରଷ୍ଟାର ସୃଷ୍ଟିରେ ପ୍ରତ୍ୟେକ ସଜୀବ, ନାରାୟଣୀ ରସଯୁକ୍ତ । ମୂର୍ତ୍ତିକୁ ପୂଜା କରି ବାହ୍ୟାଡମ୍ବରରେ ଆତ୍ମଶ୍ଳାଘା ପରିପ୍ରଚାର ଏକ ଦିବ୍ୟ ଅଭିବ୍ୟକ୍ତି ନୁହେଁ; ମାନବବାଦ ହିଁ ଏକମାତ୍ର ବିଳକ୍ଷ ବିଶ୍ୱର ଶାନ୍ତି, ସଂହତି ଓ ସ୍ଥିତାବସ୍ଥା ବିରୋଧୀ ଜନକଲ୍ୟାଣକାରୀ ଦର୍ଶନ ନିମନ୍ତେ । ଏହି ମହାମନ୍ତ୍ରରେ ଅଭିମନ୍ତ୍ରିତ ଦିବ୍ୟାତ୍ମାଙ୍କର ଅହରହ ଜୀବନ ସଂଘର୍ଷ ଓ ସଂଗ୍ରାମରେ ଗୁଢ଼ିମନ୍ତ ସାମାଜିକ ଅବ୍ୟବସ୍ଥା ବିରୋଧରେ ହରେଇବାର ଦୀକ୍ଷାରେ ଦୀକ୍ଷିତ ହୋଇ ଯେଉଁ ସଂଗ୍ରାମ କରିଯାଇଛନ୍ତି, ତାହା ଯେଉଁ ସମାଜରେ

ଅନାଲୋଚିତ ସେ ସମାଜର ସକାରାତ୍ମକ ଭବିତବ୍ୟ ଚିନ୍ତା କରିବା ଏକ ଦିବାସ୍ୱପ୍ନ । ଏତଦ୍‌ବ୍ୟତୀତ ଆମଭଳି ଓଡ଼ିଆ ଭାଷା ଜନନୀ ପ୍ରତି ଚରମ ମାତୃଭକ୍ତିଅନୁରକ୍ତାଙ୍କୁ ଦିବ୍ୟାତ୍ମା କର ବହୁଳ ଭାବରେ ପ୍ରଭାବିତ କରିଛନ୍ତି । ଯେଉଁଦିନ ଆମେ ତାଙ୍କୁ ପଢ଼ିଲୁ ଜଣେ ବ୍ୟବସ୍ଥାପକ ଭାବରେ, ଯେଉଁ ସମୟରେ ସମଗ୍ର ବ୍ରିଟିଶ ଭାରତରେ ଏକମାତ୍ର ଇଂରାଜୀ ଭାଷା ହିଁ ବୈଧାନିକ ଭାଷାର ମାନ୍ୟତାପ୍ରାପ୍ତ ହୋଇଥିଲା, ସେତେବେଳେ ବିହାର ଓଡ଼ିଶା ବିଧାନପରିଷଦର ପ୍ରଥମ ସଦସ୍ୟ ଭାବରେ ଏବଂ ନିଜ ମାତୃଭାଷାରେ ଦାବୀ ଉପସ୍ଥାପନ କରିବାରେ ଆଦ୍ୟ ବିଶେଷଣରେ ବିଭୂଷିତ ହୋଇଥିବା ପ୍ରାତଃସ୍ମରଣୀୟ ବରେଣ୍ୟ କରଙ୍କର ବଳିଷ୍ଠ ଯୁକ୍ତି ଉପସ୍ଥାପନ, ତଥ୍ୟାବତରଣ ଏବଂ ବ୍ରିଟିଶ ସାହେବଙ୍କ ସମର୍ଥନର ଇତିହାସ ଆମ ଭିତରେ ଏକ ପୁଲକ ଜାଗ୍ରତ କରାଇଥିଲା । ଏବେ ବି ତାହା ଆମ ଭିତରେ ହେଉଛି ପ୍ରତିଫଳିତ । ସବିଶେଷ ଭାବରେ ଡକ୍ଟର କମଳାକାନ୍ତ କର ତାଙ୍କ ଆଲେଖ୍ୟରେ ଏହି ପୁସ୍ତକରେ ସନ୍ନିବେଶିତ କରିଥିବାରୁ ତାହା ଏଠାରେ ଉଦ୍ଧୃତ କରି କଳେବର ବୃଦ୍ଧି କରିବାର ଧୃଷ୍ଟତା ଆମେ କରିବୁ ନାହିଁ ।

ସାମ୍ପ୍ରତିକ ସମାଜରେ ପ୍ରତ୍ୟେକ ଶ୍ରେଣୀର ପାଠ୍ୟ ପୁସ୍ତକରେ ତାଙ୍କୁ ଆଲୋଚନା, ପର୍ଯ୍ୟାଲୋଚନା ଏବଂ ବୟସାନୁକ୍ରମିକ ଶିକ୍ଷା ପ୍ରଦାନରେ ଚୟନର ଭିତ୍ତିରେ ଯଦି ପଢ଼ାଯାଏ, ତାହା କେବଳ ଆଜିର ଓଡ଼ିଶା ପାଇଁ ନୁହେଁ, ଆଗାମୀ ଓଡ଼ିଶା ପାଇଁ ହେବ ଏକ ବିକଳ୍ପ ବିହୀନ ପଣ୍ୟ । ଆଜି ଯେଉଁମାନେ ଏକ ଜାତିବିହୀନ ସମତାଭିତ୍ତିକ ସମାଜର ସ୍ୱପ୍ନ ଦେଖୁଛନ୍ତି ବୋଲି ସଭା ସମିତି, ଆଲୋଚନାଚକ୍ର ତଥା ବିଭିନ୍ନ ଛାପା ଗଣମାଧ୍ୟମରେ ଆଲେଖ୍ୟ ଜନାର୍ପଣ କରି ସ୍ୱପ୍ରଚାରିତ ସ୍ୱଭାଟନିଯୋଜନକାରୀ ମାନେ ସାମାଜିକ ନ୍ୟାୟ ଆନ୍ଦୋଳନର ପ୍ରମୁଖ କାଣ୍ଡାରୀ ବିଶେଷଣରେ ବିଭୂଷିତ ହେବାପାଇଁ ଶ୍ୱାନବତ୍ ଲାଳାୟିତ, ସେହି ବିବୃତ୍ତିଜୀବୀ ପରାଙ୍ଗପୁଷ୍ଟମାନେ ଯେଉଁଦିନ ପୂଣ୍ୟାତ୍ମା କରଙ୍କୁ ପଢ଼ିବେ, ନିଜ ଆଇନାରେ ସେମାନଙ୍କର ବାମନତ୍ୱର ପ୍ରତିଛବି ଦେଖିବାର ସୌଭାଗ୍ୟ ପାଇବେ । ପ୍ରଚାରିତ ଏହି ସାମାଜିକ ନ୍ୟାୟ ସୁରକ୍ଷାବାଦୀମାନେ ବାସ୍ତବରେ ହିଁ ସାମାଜିକ ବୈଷମ୍ୟତାର ବୀଜ ପ୍ରତିନିୟତ ବପନ କରନ୍ତି ନିଜର ସ୍ୱାର୍ଥପୂର୍ତ୍ତୀ କ୍ଷେତ୍ରରେ । ଶାଗୁଣା ମଢ଼ ଉପରେ ବସି ରାମ ମାଳି ଜପିବା ଭଳି ଏହି ଦୁରାତ୍ମାମାନେ ସାମ୍ପ୍ରଦାୟିକତା ଓ ଜାତିଆଣ ସଂଘର୍ଷର ଶବ ଉପରେ ସ୍ୱାର୍ଥର ସୌଧ ଗଠନ କରିଥାନ୍ତି । ସେମାନେ ଯେଉଁଦିନ ପୂଣ୍ୟାତ୍ମାଙ୍କର ତ୍ୟାଗ, ସାମାଜିକ କଷଟିପଥରରେ ବହୁବାର ପରୀକ୍ଷିତର ଇତିହାସକୁ ଅଧ୍ୟୟନ କରିବେ ଓ ସେଦିନ ଯଦି ସାମାନ୍ୟ ଲଜ୍ଜା ସମ୍ଭ୍ରମ ଆଧାରରେ ନିଜକୁ ତୁଳନା କରିବେ, ତେବେ "ଚୋର ମା' ଦୁଆର ଦେଇ କାନ୍ଦିବା" ନ୍ୟାୟ ହିଁ ହେବ ପ୍ରତିପାଦିତ ।

ପ୍ରଶାନ୍ତ ମହାସାଗରର ଗୋଟିଏ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ ସାମାନ୍ୟ ଗଣିତ ଜ୍ଞାନ ଥିବା ଆମଭଳି ବାମନ ଯେଭଳି ସମଗ୍ର ଜଳରାଶିକୁ ମାପିବାକୁ ଅକ୍ଷମ, ଠିକ୍ ସେହିପରି ପୂଣ୍ୟାତ୍ମା ସମାଜ ସଂସ୍କାରକ ବାଗ୍ମୀ ବିଶ୍ୱନାଥ କରଙ୍କୁ ସ୍ୱଳ୍ପ କେତୋଟି ପୃଷ୍ଠାର ଆଲେଖ୍ୟରେ ପାଠକାର୍ପଣ କରିବା ସମ୍ପୂର୍ଣ୍ଣ ଅସମ୍ଭବ—କେବଳ ମାତ୍ର ସାମାନ୍ୟ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ଛଡ଼ା ।

ପରିଶେଷରେ ସ୍ୱର୍ଗତ ଚିନ୍ତାମଣି ଆଚାର୍ଯ୍ୟଙ୍କ ଦ୍ୱାରା ସମ୍ପାଦିତ ଓ ସମ୍ପ୍ରତି ଦୁଷ୍ପ୍ରାପ୍ୟ ଅମୂଲ୍ୟ ସୃଷ୍ଟି "ପତ୍ର ମାଧ୍ୟମରେ ଆତ୍ମ ପରିଚିତି, ବିଶ୍ୱନାଥ କର" ପୁସ୍ତକକୁ ପୁନଃମୁଦ୍ରଣ କରିବାକୁ ଦିବ୍ୟାତ୍ମାଙ୍କ ବଂଶଜ ଆମର ପରମ ପୂଜ୍ୟ ଡାକ୍ତର କମଳାକାନ୍ତ କରଙ୍କ ସୀମାହୀନ ପ୍ରୟାସ ତଥା ଆମର ସାମାନ୍ୟ ତ୍ରୁଟି ପ୍ରତି ଦୁର୍ବାସାଚରିତ ଚାପ ପ୍ରୟୋଗ "ସୁବାର୍ତ୍ତା" ପ୍ରକାଶନ ପାଇଁ ଏକ ମହାର୍ଘ ଆଶୀର୍ବାଦ । ଏତଦ୍‌ବ୍ୟତୀତ ଆମର ସାନୁଜ ତଥା ମାନବବାଦୀ ଗାଳ୍ପିକ, ସମଧର୍ମା ଆଶିଷ ରଞ୍ଜନ ମହାପାତ୍ରଙ୍କର ସହଯୋଗ, କର୍ମଜୀବୀ ବ୍ୟସ୍ତବହୁଳ ଶ୍ରମଦାନ ଏଭଳି ଉଚ୍ଚମାନବୀୟ ମୂଲ୍ୟବୋଧ ଜୀବନଚର୍ଯ୍ୟାର ପୁନଃମୁଦ୍ରଣ ହୋଇପାରିଛି ସମ୍ଭବ । ଆମର ଭାଷା ନାହିଁ ଜଣାଇବାକୁ କୃତଜ୍ଞତା ଓ ଧନ୍ୟବାଦ ଡକ୍ଟର କମଳାକାନ୍ତ କର, ଶ୍ରୀଯୁକ୍ତ ରଜତ କୁମାର କର ଓ ଶ୍ରୀମାନ୍ ଆଶିଷ ରଞ୍ଜନ ମହାପାତ୍ରଙ୍କୁ । କେବଳ ପରମ କାରୁଣିକ ଜଗତର ନାଥ ଜଗନ୍ନାଥଙ୍କ ନିକଟରେ ଆମର ପ୍ରାର୍ଥନା, ସେମାନେ ସ୍ୱକୀୟ ପ୍ରତିଭା ଆଧାରରେ ଯଥୋଚିତ ସାମାଜିକ ପ୍ରାପ୍ୟ ପାଇ ସଦା ହୁଅନ୍ତୁ ଯଶସ୍ୱୀ ବିମଣ୍ଡିତ ।

ଏହି ଅବକାଶରେ ଅନ୍ୟତମ ସାରସ୍ୱତ ସାଧକ ତଥା "ସୁବାର୍ତ୍ତା"ର ସତୀର୍ଥ, ସାମ୍ବାଦିକ ଶ୍ରୀଯୁକ୍ତ ରତ୍ନାକର ପତିଙ୍କର ସହଯୋଗ ଓ ସ୍ୱାର୍ଥବିହୀନ ଶ୍ରମଦାନ ଆମପାଇଁ ବିକଳ୍ପ ବିହୀନ ପଣ୍ୟ । ତାଙ୍କର ସମର୍ପିତ ବ୍ୟକ୍ତିସତ୍ତା ନିକଟରେ "ସୁବାର୍ତ୍ତା" ଚିର ଋଣୀ । "ସୁବାର୍ତ୍ତା"ର ଏହି ପ୍ରୟାସ ସଫଳ ହେବ ଯଦି ଆଗାମୀ ପିଢ଼ି ଦିବ୍ୟାତ୍ମା ଅତୁଳନୀୟ ସମାଜ ସଂସ୍କାରକ ବାଗ୍ମୀ ବିଶ୍ୱନାଥ କରଙ୍କର ସଠିକ୍ ମୂଲ୍ୟାଙ୍କନ କରେ ।

"ଜୟ ଜଗନ୍ନାଥ" "ବନ୍ଦେ ଉତ୍କଳ ଜନନୀ"

